# ଧର୍ମ ଓ ରାଜନୀତି



ଗୁରୁଚରଣ ପଟ୍ଟନାୟକ

# ଧର୍ମ ଓ ରାଜନୀତି

ଗୁରୁଚରଣ ପଟ୍ଟନାୟକ

ନବଯୁଗ ଗ୍ରନ୍ଥାଳୟ
ବଜ୍ରକବାଟି ରୋଡ, କଟକ

# ଧର୍ମ ଓ ରାଜନୀତି

ଲେଖକ :
ଗୁରୁଚରଣ ପଟ୍ଟନାୟକ

ପ୍ରକାଶକ :
ନବଯୁଗ ଗ୍ରନ୍ଥାଳୟ
ବଜ୍ରକବାଟି ରୋଡ଼, କଟକ

ପ୍ରକାଶ ସମୟ : ଜାନୁଆରୀ, ୧୯୯୪

ମୁଦ୍ରଣ :
ବଓ ପ୍ରିଣ୍ଟର୍ସ
କଟକ-୨

ମୂଲ୍ୟ : ସାଧା ଛ'ଟଙ୍କା
ବନ୍ଧା ଦଶଟଙ୍କା

# ଭବିଷ୍ୟତର ସନ୍ଦେଶ

ଏହା ମାର୍ଚ୍ଚ ମାସ ତଳର ଲେଖା । ଇତିମଧ୍ୟରେ ଏକ ବିଶେଷ ଘଟଣା ହେଲା, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ରାଜସ୍ଥାନ, ଆଉ ହିମାଚଳ ଏହି ଚାରିଗୋଟି ରାଜ୍ୟରେ ବିଧାନ ସଭା ନିର୍ବାଚନ । କାରଣ, ଧର୍ମକୁ ରାଜନୀତିର ଭିତ୍ତିକରି ବି. ଜେ. ପି. ନେତୃତ୍ୱରେ ହିନ୍ଦୁ ସାଂପ୍ରଦାୟିକତା ବାବ୍ରୀ ମସଜିଦକୁ ଭାଙ୍ଗି ଧୂଳିସାତ୍ କରିଥିଲା । ସେଥିଯୋଗୁଁ କେନ୍ଦ୍ର ସରକାର ଉତ୍ତର ପ୍ରଦେଶ ସମେତ ଚାରିଗୋଟି ବି. ଜେ. ପି. ଶାସିତ ସରକାରଙ୍କୁ ଭାଙ୍ଗି ଏକ ସାଙ୍ଗରେ ନିର୍ବାଚନର ସୂତ୍ରପାତ କଲେ । ପୁଣି ସେହି ଧର୍ମକୁ ଭିତ୍ତିକରି ବି. ଜେ. ପି. ସଂଗ୍ରାମରେ ଠିଆ ହେଲା । ବି. ଜେ. ପି. ନେତା ଆଡ଼ଭାନୀ (୨୭, ସେପ୍ଟେମ୍ବର ୧୯୯୩) ଘୋଷଣା କଲେ ଯେ ତାହା ହେବ ଏକ ଗଣଭୋଟ; ଅର୍ଥାତ୍ ତା'ର ଧର୍ମ ଭିତ୍ତିକ ରାଜନୀତି ନେଇ ଲୋକମତ । ୧୯୯୨ ଡିସେମ୍ବର ୬ରେ, ସେହି ମସଜିଦ ଭଙ୍ଗା ଓ ବିଜେପି.ର ଉଦ୍ଦେଶ୍ୟ କାର୍ଯ୍ୟକ୍ରମ ଉପରେ ଏହି ଥର ଲୋକେ ତାଙ୍କର ରାୟ ଦେବେ । ଆଉ ମଧ୍ୟ ପ୍ରଚାର ହେଲା, ସେହି ନିର୍ବାଚନ ହେଉଛି ଲୋକସଭା ଦଖଲ ଦିଗରେ ବିଜେପି.ର ନିଶ୍ଚିତ ପଦକ୍ଷେପର ଏକ ସୋପାନ । ତେଣୁ ସ୍ଲୋଗାନ ହେଲା, "ଆଜି ୫ଟି ବିଧାନସଭା, କାଲି ଲୋକସଭା ।" ୟୁ.ପି.ର ପୂର୍ବତନ ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂହ ଆହ୍ୱାନ ଦେଇ କହିଲେ ଯେ ଯଦି ବି. ଜେ. ପି. ତା'ର ପୂର୍ବର ୨୨୨ଟି ଆସନରୁ ଗୋଟିଏ ମାତ୍ର ସ୍ଥାନ କମ୍ ପାଏ, ସେ ତାକୁ ବି. ଜେ. ପି. ପ୍ରତି ଲୋକଙ୍କର ଅରୁଚି ମତ ବୋଲି ଗ୍ରହଣ କରିବେ । ଅତଏବ ବି. ଜେ. ପି. ଧରି ନେଇଥିଲା, ଲୋକେ ତା'ର ସାଂପ୍ରଦାୟିକ ନୀତିକୁ ନିଶ୍ଚୟ ସମର୍ଥନ ଦେବେ ।

କିନ୍ତୁ ସେହି ଚାରିଗୋଟି ରାଜ୍ୟର ଲୋକେ ନିର୍ବାଚନରେ ବି. ଜେ. ପି. ବିରୁଦ୍ଧରେ ତାଙ୍କର ରାୟ ଦେଇଛନ୍ତି । ତା'ର ସେହି ନୀତିକୁ ପ୍ରତ୍ୟାଖ୍ୟାନ କରିଛନ୍ତି, ତାହା ଯେପରି ସରକାର ଗଠନ କରି ନ ପାରିବ ସେ ଦୃଷ୍ଟିରୁ ତା'ର ସଂଖ୍ୟା ହ୍ରାସ କରି ଦେଇଛନ୍ତି । ଅବଶ୍ୟ, ରାଜସ୍ଥାନରେ କେତେକ ସ୍ୱାଧୀନ ସଭ୍ୟଙ୍କୁ ହାତ କରି ତାହା

ସରକାର ଗଢ଼ିବାରେ ସମର୍ଥ ହୋଇଛୁ ଏବଂ ଦିଲ୍ଲୀରେ ତାହା ସରକାର ଗଠନ କଲେ ମଧ୍ୟ ତା'ର କଥା ସ୍ୱତନ୍ତ୍ର । ସେଠି ବାବ୍ରୀ ମସ୍‌ଜିଦ ଭଙ୍ଗା ସହିତ ତା'ର କୌଣସି ସମ୍ପର୍କ ନାହିଁ । ପ୍ରଥମ ରାଜ୍ୟ ସରକାର ଗଠନଲାଗି ଏବେ ଦିଲ୍ଲୀରେ ନୂଆକରି ଭୋଟ ହେଲା । ଅତଏବ, ଧର୍ମ ଓ ରାଜନୀତିର ମିଶ୍ରଣ ଯେ ଯୁକ୍ତିଯୁକ୍ତ, ବାବ୍ରୀ ମସ୍‌ଜିଦର ଧ୍ୱଂସ ଯେ ଯଥାର୍ଥ, ଏବଂ ବି. ଜେ. ପି.ର ଉଦ୍ଦେଶ୍ୟ କର୍ମପନ୍ଥା—ହିନ୍ଦୁରାଷ୍ଟ୍ର ଗଠନ ଯେ ଲୋକଙ୍କଦ୍ୱାରା ସମର୍ଥିତ—ଯାହାକି ବି.ଜେ.ପି. ନିଜର ବିଜୟ ଦ୍ୱାରା ଦର୍ଶାଇବାକୁ ଚାହିଁଥିଲେ, ତାହା ଏବେ ଅନ୍ୟଥା ପ୍ରମାଣିତ ହୋଇଛି ।

ବି. ଜେ.ପି.ର ସେହି ପରାଜୟ କିନ୍ତୁ ସବୁ ଧର୍ମନିରପେକ୍ଷ ଦଳଙ୍କ ଚେଷ୍ଟା ଫଳରେ ଘଟି ନାହିଁ । ତାହା ହୋଇଛି ମୁଖ୍ୟତଃ ଜନସାଧାରଣ ସ୍ୱତଃସ୍ଫୁର୍ତ୍ତି ଜାଗରଣ ଯୋଗୁ । ଧର୍ମନିରପେକ୍ଷ ଦଳମାନେ ସାଧାରଣତଃ ନିଜ ନିଜ ମଧ୍ୟରେ ଲଢ଼ିଛନ୍ତି । ତେଣୁ ବି. ଜେ. ପି. ବିରୋଧୀ ଭୋଟ ବିଭକ୍ତ ହେବାର ଅବସ୍ଥା ସୃଷ୍ଟି ହୋଇଛି; କିନ୍ତୁ ଦେଖାଯାଏ, ପ୍ରାର୍ଥୀ ଯେଉଁ ଦଳର ହେଉନାହିଁ, ଯିଏ ବି. ଜେ. ପି.କୁ ପରାସ୍ତ କରିପାରିବ ଲୋକେ ସାଧାରଣତ ତାକୁ ଭୋଟ ଦେଇଛନ୍ତି । କଂଗ୍ରେସର ନୀତି ଯୋଗୁଁ ଲୋକେ ତା'ର ବିରୋଧୀ ହେଲେ ବି ଅନ୍ୟ କୌଣସି ବିକଳ୍ପ ନ ଦେଖି ସେମାନେ ବି. ଜେ. ପି.କୁ ପରାସ୍ତ କରିବାଲାଗି ସେହି କଂଗ୍ରେସକୁ ଭୋଟ ଦେଇଛନ୍ତି । ଉତ୍ତର ପ୍ରଦେଶରେ ଏକ ବିଶେଷ ଅବସ୍ଥା ସୃଷ୍ଟି ହୋଇଛି । ସେଠି ଦଳିତ ହରିଜନ, ଅନ୍ୟ ଅନୁନ୍ନତ ଜାତି ଓ ମୁସଲମାନଙ୍କର ଭୋଟରେ ସ୍ୱତଃସ୍ଫୁର୍ତ୍ତି ଅଘୋଷିତ ମିଳନ ଘଟିଛି । ମୁସଲମାନଙ୍କ ଭଳି, ଦଳିତ ହରିଜନ ଓ ଅନ୍ୟ ଅନୁନ୍ନତ ଜାତି ମଧ୍ୟ ବି. ଜେ. ପି.ର ନୀତି, ଲକ୍ଷ୍ୟ ଓ କାର୍ଯ୍ୟ ଫଳରେ ଆତଙ୍କଗ୍ରସ୍ତ, ତାକୁ ହଟାଇବାଲାଗି ଯିଏ ଯୋଗ୍ୟ ତାକୁ ଭୋଟରେ ଆଗେଇଛନ୍ତି ।

ସେହି ସାଂପ୍ରଦାୟିକ ପ୍ରଚାର ଫଳରେ ୧୯୯୨ ରେ ବାବ୍ରୀ ମସ୍‌ଜିଦ ଭଙ୍ଗା ଥିଲା, ଏବେ ୧୯୯୩ରେ, ଅନ୍ୟ କେବେ ଅତୀତରେ ଘଟି ନଥିବା ଏକ ନୂତନ ଘଟଣା ଘଟିଛି । ଗାନ୍ଧିଜୀଙ୍କ ହତ୍ୟାକାରୀ ନାଥୂରାମ ଗଡ଼ସେର ଫାସିର ସ୍ମୃତି ଦିବସ ପାଳିତ ହୋଇଛି । ନାଥୂରାମର ଖାତିରର ଗୌରବ ଗାନକରି ଗାନ୍ଧିଜୀଙ୍କୁ ଦୁରାତ୍ମାର ନରାଧମ ଭାବେ ବର୍ଣ୍ଣନା କରାଯାଇଛି । ତାଙ୍କର ହତ୍ୟାକୁ ପୌରାଣିକ 'ବଧ'ର ଆଖ୍ୟା ଦିଆଯାଇଛି । ପୁରାଣରେ ଦେବତାମାନେ ଅସୁରଙ୍କୁ ବଧକରି, ପାପର ଭାର ନିବାରଣ କଲାଭଳି ଗାନ୍ଧିଜୀଙ୍କ ହତ୍ୟା ଏକ ପବିତ୍ର କାର୍ଯ୍ୟ । ଗାନ୍ଧିଜୀଙ୍କ ଚିତାଭସ୍ମ ପଡ଼ିବାରେ ଭାରତର ସବୁ ନଦୀ ଅପବିତ୍ର, କେବଳ ସିନ୍ଧୁ ନଦୀ ପବିତ୍ର ରହିଛି, ତେଣୁ ଅଖଣ୍ଡ ଭାରତ, ହିନ୍ଦୁରାଷ୍ଟ୍ର ଗଠନ ପାଇଁ ସିନ୍ଧୁ ନଦୀରେ କେବଳ ନାଥୂରାମର ଚିତାଭସ୍ମ ବିସର୍ଜନ କରିବାକୁ ହେବ ।

ତେଣୁ ବି. ଜେ. ପି.ର ପ୍ରସ୍ତୁତ ପ୍ରସ୍ତାବ ଓ ତା'ର ପ୍ରତିପତ୍ତି ଏବେବି ଯଥେଷ୍ଟ ମାତ୍ରାରେ ବଳବତ୍ତର ରହିଛି । ସେ ସ୍ଥଳେ ସମାଲୋଚନାରେ ଧରା ପଡ଼ିଥିବା ତା'ର ଦୋଷ ଦୁର୍ବଳତାକୁ କପଟ ଢାଙ୍କିବ ବା ଦୂର କରିବ । ପ୍ରଥମତଃ ତା'ର ବ୍ରାହ୍ମଣ୍ୟବାଦ ପରିସ୍ଫୁଟ । ତାହା ବ୍ରାହ୍ମଣ ବଣିଆ (ବ୍ୟବସାୟୀ)ଙ୍କ ଦଳ ଭାବେ ପରିଚିତ । ଦ୍ୱିତୀୟରେ ତାହା କପଟ ଦଳିତ ହରିଜନ ଓ ଅନ୍ୟ ଅନୁନ୍ନତ ଜାତିଙ୍କୁ ହାତ କରିବ । ଫଳରେ ଲକ୍ଷ୍ୟରେ ହରିଣର ଭଳି ଏବେ ଏକ ନୂତନ ଜିନିଷ ଦେଖାଯାଉଛି । ସେପ୍ଟେମ୍ବର ୬ ତାରିଖ ବାବ୍ରୀ ମସ୍‌ଜିଦ ଧ୍ୱଂସ ଦିବସ ପାଳନ ଉପଲକ୍ଷେ, ଅଯୋଧ୍ୟାରେ ବି. ଜେ. ପି. ସଭାରେ ରାମଙ୍କ ଫଟୋ ସହିତ ଅମ୍ବେଦକରଙ୍କ ଏକ ବଡ଼ ଫଟୋ ଥୋଇଛି । କାରଣ, ଅମ୍ବେଦକର ହେଲେ ଦଳିତ ହରିଜନଙ୍କର ନେତା ଓ ବ୍ରାହ୍ମଣଙ୍କ ଉତ୍ପୀଡ଼ନ ଯୋଗୁ ବହୁ ହରିଜନଙ୍କୁ ନେଇ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ବି. ଜେ. ପି.ର ଏହିର ବକ୍ତବ୍ୟ ହେଲା ଯିଏ ଯଦି ବୌଦ୍ଧ ହୋଇ ନଥାନ୍ତେ ତେବେ ଦଳିତମାନେ ମୁସଲମାନ ବା ଖ୍ରୀଷ୍ଟିଆନ୍ ହୋଇଯାଇଥାନ୍ତେ । ବୌଦ୍ଧଧର୍ମ ଭାରତରେ ଓ ହିନ୍ଦୁଙ୍କ ସହ ଜଡ଼ିତ, ଅଥଚ ଠିକ୍ ସେହି ଡିସେମ୍ବର ୬ ତାରିଖ ହୋଇଛି ଅମ୍ବେଦକରଙ୍କ ଜନ୍ମଦିନ । ସେହିଦିନ ପାଟନାରେ ସେହି ଉପଲକ୍ଷେ ଅନୁଷ୍ଠିତ ଏକ ବଡ଼ ସଭାରେ ୨୫ ହଜାର ଦଳିତ ଲୋକ ବୌଦ୍ଧ ଧର୍ମ ଗ୍ରହଣ କରନ୍ତି, ତାଙ୍କର ଶପଥ ହେଲା—ସେମାନେ ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କୁ ସ୍ୱୀକାର କରିବେ ନାହିଁ । ରାମକୃଷ୍ଣ ଆଦି କାହାରିକୁ ଅବତାର ମାନିବେ ନାହିଁ, ବୁଦ୍ଧ ମଧ୍ୟ ଅବତାର ନୁହନ୍ତି, ବ୍ରାହ୍ମଣ ପ୍ରବର୍ତ୍ତିତ କୌଣସି ବିଧିବିଧାନ ଶ୍ରାଦ୍ଧ ପିଣ୍ଡଦାନ ଆଦି କାର୍ଯ୍ୟ କରିବେ ନାହିଁ, ଇତ୍ୟାଦି ।

ଏମାନେ ଭଲକରି ଜାଣନ୍ତି, ବି.ଜେ.ପି.ର ହଠାତ୍ ଦଳିତ ଓ ଅନ୍ୟ ଅନୁନ୍ନତ ଜାତିଙ୍କ ପ୍ରତି ପ୍ରେମ ତାଙ୍କର ନିଜସ୍ୱ ଧର୍ମପ୍ରଣୋଦିତ ନୁହେଁ, ତାହା ତାଙ୍କର ଲକ୍ଷ୍ୟସାଧନ ଦିଗରେ ଏକ ରାଜନୈତିକ ଆବଶ୍ୟକତା । ସେହି ଦୃଷ୍ଟିରୁ ସେମାନେ ବିହାର ମୁଖ୍ୟମନ୍ତ୍ରୀ ଲାଲୁପ୍ରସାଦଙ୍କର ମନ୍ଦିରରେ ହରିଜନ ପୂଜକ ନିଯୁକ୍ତିକୁ ସମର୍ଥନ କରନ୍ତି, ଯାହାଯାକେ ମଣ୍ଡଳ କମିଶନର ବିରୋଧକରି ଅସ୍ୱାକୃତିକୁ ସମର୍ଥନ ଦେଇଥିବା ଲୋକେ ଏବେ ସେହି ଅନ୍ୟ ଅନୁନ୍ନତ ଜାତିଙ୍କ ଲାଗି ସ୍ଥାନ ସଂରକ୍ଷଣ କାର୍ଯ୍ୟର ପକ୍ଷପାତୀ, ଏସବୁ ଧର୍ମର ଡାକ ନୁହେଁ, ରାଜନୀତିର ଦାବୀ ।

, ଲକ୍ଷ୍ମୀ ପାଇବା ଲାଗି ମଣିଷର ଅବଶ୍ୟକତା ଭଳି, ସେ କୌଣସିର ବନ୍ଧନରେ ନମ୍ର ପ୍ରାପ୍ତି ପାଇଁ ତା'ର ଅନ୍ୱେଷଣା ଦରକାର । ସେଇ ଦୃଷ୍ଟିରୁ ଏ ଲେଖା । କୌଣସି ଜାତି ଧର୍ମ ବା ବର୍ଣ୍ଣ ପ୍ରତି କୌଣସି ପ୍ରକାରର ବିଦ୍ୱେଷ ବା ଅଭଦ୍ର ଆଚରଣ ଏହାର ଉଦ୍ଦେଶ୍ୟ ନୁହେଁ । ସଂଖ୍ୟାଧିକ ଲୋକଙ୍କ ଧର୍ମୀୟ

ସାଂପ୍ରଦାୟିକତା ଅତ୍ୟନ୍ତ ବିପଦଜନକ ବିଷୟ । ତେଣୁ ଏଠାରେ ତା'ର ଉପରେ ଜୋର ଦିଆଯାଇଛି, ତା' ବୋଲି, ମୁସଲମାନ ସାଂପ୍ରଦାୟିକତା ପ୍ରତି ଆଖିବୁଜି ଦେବାର ପ୍ରଶ୍ନ ନାହିଁ । ଅନ୍ୟର ସାଂପ୍ରଦାୟିକତା ବିରୁଦ୍ଧରେ ଲଢ଼ିବାକୁ ହେଲେ ଆଗ ନିଜର ସାଂପ୍ରଦାୟିକ ଭାବକୁ ଦୂର କରିବାକୁ ହେବ । ନିଜର ସାଂପ୍ରଦାୟିକ ଭାବ ସଦାସର୍ବଦା ଅନ୍ୟର ସାଂପ୍ରଦାୟିକ ଭାବକୁ କେବଳ ପ୍ରୋତ୍ସାହିତ ଓ ବଳିଷ୍ଠ କରେ ।

କେତେକ ରାଜ୍ୟରେ ବ୍ରାହ୍ମଣ୍ୟବାଦର ପ୍ରତିବାଦ ସ୍ୱରୂପ ଜାତିଆଣ ମନୋଭାବ ପ୍ରକାଶ ପାଏ । ସେଥିପ୍ରତି ସାବଧାନ ହେବାକୁ ହେବ । ତାହା କେବଳ ଜାତିଗତ ବିଦ୍ୱେଷ ଓ ସଂଘର୍ଷ ଦିଗକୁ ନେଇ ଯାଏ, ସେଥିରେ ସମସ୍ୟାର ସମାଧାନ ନାହିଁ, କେଉଁଠି ଯେଉଁ ଜାତି, ଧର୍ମ ଅଧିକ ବର୍ଦ୍ଧିଷ୍ଣୁ ହୋଇ ପଡ଼େ, ସମସ୍ତଙ୍କୁ ଧର୍ମନିର-ପେକ୍ଷତାର ପଥରେ ଅଗ୍ରସର ହେବାକୁ ହେବ, ତା' ହିଁ ହେଉଛି ଗଣତନ୍ତ୍ରର ପଥ, ଜାତି, ଧର୍ମ ଓ ଶୋଷଣହୀନ ନିର୍ଣ୍ଣିତ ହେଉଛି ତା'ର ଏକମାତ୍ର ଉତ୍ତର—ତାହା ହିଁ ମାନବିକତାର ବିକାଶ; ସାମ୍ୟ, ମୈତ୍ରୀ, ଭ୍ରାତୃ ଭାବରେ ଅନ୍ତରଙ୍ଗର ସନ୍ଦେଶ ।

ଗୁରୁଚରଣ ପଟ୍ଟନାୟକ
୩୦, ଡିସେମ୍ବର, ୧୯୯୩



# ଦୁଇ ଲକ୍ଷ୍ୟ, ଦୁଇ ନୀତି, ଦୁଇ ପଥ

( ୧ )

ଏବେ ରାଜନୀତିରୁ ଧର୍ମକୁ ଅଲଗା କରିବା ନେଇ ଆଲୋଚନା ଆରମ୍ଭ ହୋଇଛି । ସେ ଦିଗରେ କିପରି ଆଇନ ହେବ, ତା'ର ରୂପରେଖ କ'ଣ ହେବ, ତାକୁ କିଏ କେମିତି କାର୍ଯ୍ୟକାରୀ କରିବ,—ଇଏ ସବୁ ସ୍ୱତନ୍ତ୍ର ବିଷୟ । ପ୍ରଥମତଃ ନୀତି ଦୃଷ୍ଟିରୁ ରାଜନୀତି ଓ ଧର୍ମ, ଅଲଗା ହେବା କେତେଦୂର ଯଥାର୍ଥ, ଦେଶର ସାମୂହିକ ସ୍ୱାର୍ଥ ଓ ବିକାଶ ପାଇଁ ତା' କେତେ ଆବଶ୍ୟକ, ଆଗ ତା'ର ବିଚାର ଦରକାର । ସମସ୍ତ ବିଚାରକୁ ଇତିହାସର ଭିତରେ ଦେଖିବାକୁ ହେବ, ଅଭିଜ୍ଞତାର ଭିତ୍ତିରେ ତଉଲିବାକୁ ପଡ଼ିବ । ତେଣୁ, ନିଜର ଭାବପ୍ରବଣତା ଓ ମନୋଗତ ଭାବନାକୁ ପ୍ରଥମେ ପରିହାର କରିବାକୁ ହେବ । ପୂର୍ବକଳ୍ପିତ କାମନା ଓ ଉତ୍ତେଜନାର ଭିତର ଦେଇ କୌଣସି ଏକ ସଠିକ ନିର୍ଦ୍ଧାରଣରେ ଉପନୀତ କସି ନକାଲେ ସମ୍ଭବ ନୁହେଁ ।

ସର୍ବପ୍ରଥମେ ମନେ ରଖିବାକୁ ହେବ, ଧର୍ମ ବୋଇଲେ କେବଳ ହିନ୍ଦୁ ଧର୍ମ ନୁହେଁ, ତାହା ମୁସଲମାନ, ଖ୍ରୀଷ୍ଟିଆନ, ଶିଖ, ବୌଦ୍ଧ ଆଦି ସବୁ ଧର୍ମକୁ ବୁଝାଏ । ରାଜନୀତିରୁ ଧର୍ମ ଅଲଗା ହେବା ମାନେ, ଧର୍ମ ମାତ୍ରେ ଏସବୁ ଅଲଗା ହେବେ । ତାକୁ ଧରି, ତାଙ୍କ ନାଁରେ ବା ତାଙ୍କର ଆଦରଣ ବା ଆଶୀର୍ବାଦ ତଳେ ରାଜନୀତି ଚାଲିବ ନାହିଁ ।

କେତେକ ଅଛନ୍ତି, ଯେଉଁମାନେ କି ଏହାର ଘୋର ବିରୋଧୀ, ସେଥିଲାଗି ପ୍ରବଳ ଆନ୍ଦୋଳନ କରିଆନ୍ତି । କାରଣ, ସେମାନେ ସେହି ଧର୍ମକୁ ଧରି, ଧର୍ମ ନାମରେ ରାଜନୀତି କରନ୍ତି, ଲୋକଙ୍କର ଧର୍ମ ଓ ବିଶ୍ୱାସକୁ ନିଜର ରାଜନୈତିକ ଅସ୍ତ୍ର ଭାବେ ବ୍ୟବହାର କରନ୍ତି । ତାହା ଯଦି ବନ୍ଦ ହୋଇଯାଏ, ତେବେ ସେମାନେ ରାଜନୈତିକ ସଂଗ୍ରାମରେ ନିରସ୍ତ୍ର—ଅସ୍ତ୍ରହୀନ ହୋଇଯିବେ । ଭୋଟ ଲଢ଼େଇ, କ୍ଷମତା ଦଖଲ ସଂଗ୍ରାମରେ ଲୋକଙ୍କୁ ଟାଣିବା ଲାଗି ତାଙ୍କ ପାଖରେ ଅନ୍ୟ କୌଣସି ସହଜ ପନ୍ଥା ରହିବ ନାହିଁ । ଥରେ ଧର୍ମ-ଉତ୍ତେଜନା ସୃଷ୍ଟି କରିଦେଲେ, ତେଣିକି ଲୋକେ ସେହି ସାଂପ୍ରଦାୟିକତା ପଥରେ ସ୍ୱତଃ ଗତିକରିବେ, ତାଙ୍କର ଦୃଷ୍ଟି ଦେଶର ସମୂହ ସ୍ୱାର୍ଥରୁ ଖସିଯିବ, ଏପରିକି ସେମାନେ ନିଜର ଶୋଷଣ ଆଉ ଅନ୍ୟାୟ ଅତ୍ୟାଚାରକୁ ଦେଖିବା, ତା'ର ମୁକାବିଲା କରିବାର ଆବଶ୍ୟକତା ଅନୁଭବ କରିବେ ନାହିଁ । ତାକୁ ନିଜର ଭାଗ୍ୟର ଲିଖନ କହି ସହଜରେ ମାନିନେବେ ।

ରାଜନୀତି ସହିତ ଧର୍ମକୁ ମିଶାଇଲେ ପରିଣାମ କି ଭୟାବହ ହୁଏ, ନିଜେ ଭାରତ ତା'ର ଭୁକ୍ତଭୋଗୀ । ଭାରତ ଯଦି ଆଜି ଦୁଇଖଣ୍ଡ ହୋଇଛି, ତା' ହୋଇଛି ସେହି ଧର୍ମର ଭିତ୍ତିରେ, ରାଜନୀତି ସହିତ ଧର୍ମର ମିଶ୍ରଣ ହେତୁ । ତା'ର ଆବର୍ତ୍ତନ ଭିତରେ ଆମେ ଏ ପର୍ଯ୍ୟନ୍ତ ଘାଣ୍ଟି ହେଉଛୁ । ବାହାରେ ପାକିସ୍ଥାନ ସହିତ ସଂଘର୍ଷ ଓ ଦେଶ ଭିତରେ ସାଂପ୍ରଦାୟିକ ବିବାଦର ମୂଳଚେର ରହିଛି ସେଇଠି,—ରାଜନୀତି ସହିତ ଧର୍ମର ମିଶ୍ରଣରେ,—ଧର୍ମକୁ ରାଜନୀତିର ଅସ୍ତ୍ର କରିବାରେ । ସେ ଏପରି ଏକ ଅସ୍ତ୍ର, ତାହା ଅନ୍ୟକୁ ଯେତେ ଆଘାତ କରେ, ତା' ଅପେକ୍ଷା ଅଧିକ କ୍ଷତିଗ୍ରସ୍ତ କରେ ନିଜକୁ ।

ସବୁ ଧର୍ମର ଭିତ୍ତି ହେଲା ବିଶ୍ୱାସ, ଆଉ ରାଜନୀତିର ଭିତ୍ତିହେଲା ନୀତି । ବିଶ୍ୱାସ ବ୍ୟକ୍ତିଗତ, ନୀତି କିନ୍ତୁ ସମଷ୍ଟିଗତ । ଦୁହିଁଙ୍କ ଭିତରେ ମୌଳିକ ଫରକ ଏଇଠି । ବିଶ୍ୱାସ ନ ରହିଲେ କୌଣସି ଧର୍ମ ରହିବ ନାହିଁ, ସେମିତି ବିନା ନୀତିରେ କୌଣସି ରାଷ୍ଟ୍ର ବା ଦେଶ ଚାଲି ନପାରେ । ବିଶ୍ୱାସ ନିଜପାଇଁ ହେଲାବେଳେ ନୀତି ହେଲା ସମସ୍ତଙ୍କ ପାଇଁ । ନିଜର ବିଶ୍ୱାସକୁ ଯେଉଁଠି ନୀତି ଭାବରେ ସମସ୍ତଙ୍କ ଉପରେ ଲଦି ଦେବାର ବା ରାଷ୍ଟ୍ରର ନୀତି ଭାବରେ ଚଳାଇବାର ଚେଷ୍ଟା ହୁଏ ସେଇଠି ଦ୍ୱନ୍ଦ୍ୱ ସଂଘର୍ଷ ଦେଖାଦିଏ । ସେମିତି, ରାଷ୍ଟ୍ର ନୀତି ଯେଉଁଠି ବ୍ୟକ୍ତିର ଧର୍ମ ବିଶ୍ୱାସ ଉପରେ ହସ୍ତକ୍ଷେପ କରେ, ସେଠି ଅସନ୍ତୋଷ ଅନୈକ୍ୟ ପ୍ରକାଶ ପାଏ ।

ଭାରତ କ୍ଷେତ୍ରରେ ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ ଭାରତ ଗୋଟିଏ ନୁହେଁ, ବହୁଧର୍ମର ଦେଶ । ସେଠି ଗୋଟିଏ ଧର୍ମର ବିଶ୍ୱାସ ଯଦି ରାଜନୀତି ହୁଏ, ତେବେ ସେହି ରାଜନୀତିରେ ସାଧାରଣ ଲୋକଙ୍କର ଗଣତାନ୍ତ୍ରିକ, ନାଗରିକଅଧିକାର ଖର୍ବ ଓ ଖଣ୍ଡିତ ହେବ, ଅନ୍ୟର ଧର୍ମବିଶ୍ୱାସ ମଧ୍ୟ ପୀଡ଼ିତ ହେବ । ନାହିଁ ଯଦି, ସବୁ ଧର୍ମବିଶ୍ୱାସକୁ ରାଷ୍ଟ୍ର ନୀତି କରାଯାଏ, ତେବେ ସେ ରାଷ୍ଟ୍ର ଯିବ କୁଆଡ଼େ ? ତାହା ଆଦୌ ବୁଝିପାରିବ ନାହିଁ । ପ୍ରତ୍ୟେକ ତାକୁ ନିଜ ଆଡ଼କୁ ଟାଣିବେ ।

ଜଣେ ନିଜର ବିଶ୍ୱାସ ଅନୁଯାୟୀ, ରାମ ବା ଆଲ୍ଲାଙ୍କୁ ଡାକିବାରେ କାହାର ଆପତ୍ତି ନାହିଁ, କିନ୍ତୁ ଯେଉଁ ମୁହୂର୍ତ୍ତରେ ବୁଝାଯିବ ଯେ ପ୍ରତ୍ୟେକ ଧର୍ମବିଶ୍ୱାସୀଙ୍କ ଲାଗି ଅଲଗା ଅଲଗା ନାଗରିକ ନୀତି ହେଉ, ଅଲଗା ଆଇନ କାନୁନ୍ ଗଢ଼ାଯାଉ ସେ କ୍ଷେତ୍ରରେ କଳହ, ବିଦ୍ୱେଷ ଓ ସଂଘର୍ଷ ଆଦି ସଙ୍ଗେ ସଙ୍ଗେ ଘୋଟି ଆସିବ, ସେଠି ରାଷ୍ଟ୍ର ଐକ୍ୟ ବିପନ୍ନ ହୁଏଇ, ଅନୈକ୍ୟ ଏପରିକି ବିଭାଜନ ଆଡ଼କୁ ଗତି କରିବ । କୌଣସି ଏକ ଐକ୍ୟବଦ୍ଧ ଗଣତାନ୍ତ୍ରିକ ରାଷ୍ଟ୍ର ଲାଗି ଧର୍ମ ରାଜନୀତିର ଭିତ୍ତିହୋଇ ନ ପାରେ । ବିଶ୍ୱକବି ରବୀନ୍ଦ୍ରନାଥ କୌଣସି ରାଜନୀତିଜ୍ଞ ନୁହନ୍ତି, ପ୍ରଗାଢ଼ ଧର୍ମ, ଶିଳ୍ପ ଅନୁରାଗୀ । ଯଥାର୍ଥରେ ସାବଧାନ ବାଣୀ ଶୁଣାଇ କହିଛନ୍ତି, "... ଯେଉଁ ଦେଶକୁ ଅନ୍ୟ କୌଣସି ବନ୍ଧନ ବାନ୍ଧିପାରେ ନାହିଁ, ଲୋକଙ୍କୁ ଐକ୍ୟବଦ୍ଧ କରିବାର ଭିତ୍ତି ହେଲା ମୂଳତଃ ଧର୍ମ, ସେ ଦେଶ ବାସ୍ତବିକ ହତଭାଗ୍ୟ, ଯେଉଁ ଦେଶ ଧର୍ମକୁ ଧରି ବିଭେଦ ସୃଷ୍ଟି କରେ ସେ ସବୁଠାରୁ ଅଧିକ ହତଭାଗ୍ୟ । ମଣିଷ ବୋଲି ମଣିଷର ଯେଉଁ ମୂଲ୍ୟ, ତାକୁ ସରଳଭାବେ ଶ୍ରୀଧର ସହ ସ୍ୱୀକାର କରିବା ପ୍ରକୃତ ଧର୍ମବୁଦ୍ଧି । ଯେଉଁ ଦେଶରେ ଧର୍ମ, ସେହି ବୁଦ୍ଧିକୁ ପୀଡ଼ିତ କରେ, ରାଷ୍ଟ୍ରିକ ସ୍ୱାର୍ଥ ବୁଦ୍ଧି ସେ ଦେଶକୁ ବଞ୍ଚାଇ ପାରେ ।" (ହିନ୍ଦୁ ମୁସଲମାନ, ରବୀନ୍ଦ୍ର ଗ୍ରନ୍ଥାବଳୀ, ଦ୍ୱାଦଶ ଖଣ୍ଡ, ପୃ. ୬୬୭) ଆଜି ଧର୍ମକୁ ଭିତ୍ତିକରି, ଧର୍ମର ବନ୍ଧନରେ ବନ୍ଧା ହୋଇଥିବା ବିଶ୍ୱରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଯେକୌଣସି ରାଷ୍ଟ୍ରକୁ ଅନାଅ, ଦେଖିବ, ସେଠାରେ ପ୍ରଥମ ବଳି ହେଉଛି ଗଣତନ୍ତ୍ର । ସେଠି ଲୋକଙ୍କର ନାଗରିକ ଅଧିକାର ଲୁଣ୍ଠିତ, ମାନବିକ ଅଧିକାର ଦଳିତ, ଏପରିକି କଳାକୁ କଳା ଓ ଧଳାକୁ ଧଳା କହିବାର ଅଧିକାରରୁ ଲୋକେ ବଞ୍ଚିତ ।

ତା'ର କାରଣ ଓ ପରିଣାମ ଦର୍ଶାଇ ବିଶ୍ୱ କବି ପୁଣି କହିଛନ୍ତି, "ଧର୍ମର ଆଦି ପ୍ରବର୍ତ୍ତକଗଣ ଦେବତା ନାମରେ ମଣିଷକୁ ଐକ୍ୟବଦ୍ଧ କରିବା ଲାଗି, ତାକୁ ଲୋଭ, ଦ୍ୱେଷ, ଅହଙ୍କାରରୁ ମୁକ୍ତ କରିବା ଦିଗରେ ଉପଦେଶ ଦେଇଛନ୍ତି । ତା'

ପରେ ପ୍ରତ୍ୟେକ ଧର୍ମ ବିଶ୍ୱାସୀ ସଂପ୍ରଦାୟ ସେହି ମହାପୁରୁଷଙ୍କ ବାଣୀକୁ ପଦଦଳିତ ଭାବେ ବିକୃତ ଓ ସଙ୍କୀର୍ଣ୍ଣ କରିଛନ୍ତି । ସେହି ଧର୍ମ ଦ୍ୱାରା ସେମାନେ ମଣିଷକୁ ମାଡ଼ ଚଢ଼ାଇଛନ୍ତି, ଯାହା ଏମିତି କି ବିଷଯୁକ୍ତବୁଦ୍ଧି ଦ୍ୱାରା ହୁଏ ନାହିଁ, ତାକୁ ମାରିଛନ୍ତି ପ୍ରାଣରେ, ମାନରେ, ବୁଦ୍ଧିରେ, ଶକ୍ତିରେ, ମଣିଷର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟକୁ ଛାରଖାର କରି ଦେଇଛନ୍ତି ।”

ଏବର ଭାରତର ଜୀବନରେ ରବୀନ୍ଦ୍ରନାଥଙ୍କ ସେହି ଉକ୍ତିର ସତ୍ୟତା ପ୍ରମାଣିତ । ତା'ର ପ୍ରତିଫଳନ ଏତେଦୂର ସ୍ପଷ୍ଟ, ଶକ୍ତ ଓ ଯନ୍ତ୍ରଣାଦାୟକ ଯେ ତାକୁ ଆଡ଼େଇ ଦେଇଯିବା ତା' ପକ୍ଷରେ ସମ୍ଭବ ନୁହେଁ । ଧର୍ମକୁ ତା'ର ନିଜର କ୍ଷେତ୍ରରୁ ଟାଣିଆଣି, ତାକୁ ବିକୃତ ଓ କଦର୍ଯ୍ୟ କରି ରାଜନୀତିର ଅସ୍ତ୍ର କରି ବ୍ୟବହାର କଲେ ତା'ର ଫଳ କି ଭୟାନକ ହୁଏ ତାହା ସାଧାରଣ ମଣିଷର ଚିନ୍ତାର ବାହାରେ । ପଦେ କଥାରେ କହିଲେ, ତାହା ମଣିଷକୁ ପଶୁରେ ପରିଣତ କରିଦିଏ । ତା'ର କୌଣସି ହିତାହିତ ବିଚାର ଜ୍ଞାନ ରହେ ନାହିଁ । ଫଳରେ ଭାରତ କେବଳ ଦୁଇ ଭାଗରେ ବିଭକ୍ତ ହୋଇ ନାହିଁ, ତା'ର ସେହି ଭ୍ରାତୃହତ୍ୟାର ସ୍ରୋତର ଏବେ ବି ଅବସାନ ଘଟେ ନାହିଁ । ସେହି ରକ୍ତର ସ୍ରୋତ ଆଜି ବି ଛୁଟିବାରେ ଲାଗିଛି । ଯଦି ସେହି ଧର୍ମ-ରାଜନୀତିର ପ୍ରକ୍ରିୟା ଲାଗିରହେ, ତା'ର କୌଣସି ପ୍ରତିକାର ନ ହୁଏ, ତେବେ ଭବିଷ୍ୟତରେ ଭାରତ ଯେ ଆଉ କେତେ ଖଣ୍ଡ ହେବ, ପୁଣି କେତେ ଯେ ରକ୍ତ ସ୍ରୋତ ବୋହିବ ତାହା ଭାବିଲେ ଛାତି ଥରି ଉଠେ ।

ମନେ ରଖିବାକୁ ହେବ, ଧର୍ମ ଭିତ୍ତିରେ ଦେଶର ବିଭାଜନ ଦ୍ୱାରା ଆମର ସ୍ୱାଧୀନତା ଆସିଛି । ତା'ର ଫଳ ଆମେ ଏବେବି ଭୋଗ କରିବାରେ ଲାଗିଛୁ । ଯିଏ ଭାରତର ସ୍ୱାଧୀନତା ଆନ୍ଦୋଳନର ଅଗ୍ରଣୀ ସେହି ଗାନ୍ଧିଜୀ କିନ୍ତୁ ଉକ୍ତ ସ୍ୱାଧୀନତାକୁ ବରଣ ଓ ସ୍ୱାଗତ କରିବାରେ ଭାଗିଦାର ନୁହନ୍ତି । ସେ ମୂଳରୁ ସେଥିପ୍ରତି ସତର୍କବାଣୀ ଶୁଣାଇଛନ୍ତି, (*) “ମୁଁ ପରିଷ୍କାର ଭାବେ ଦେଖି ପାରୁଛି,

---

(*)"—I see clearly that we are setting about this business the wrong way, we may not feel the full effect immediately, but I can see clearly that the future of independence gained at this price is going to be dark. I pray, the God may not keep me alive to witness it." ......

(Mahatma : Life of Mohandas Karamchand Gandhi P.G. Tendulkar Vol. 7 (1945—47)P—414)

ଯେଉଁ ମୂଲ୍ୟଦେଇ ଆମେ ସ୍ୱାଧୀନତା ଆଣିଛୁ, ତା'ର ଭବିଷ୍ୟତ ଅନ୍ଧକାର ହେବାକୁ ଯାଉଛି । ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା, ତାହା ଦେଖିବା ପାଇଁ ସିଏ ମୋତେ ବଞ୍ଚାଇ ନ ରଖନ୍ତୁ ।" (ଜୁନ ୧, ୧୯୪୭) ଭଗବାନ ଗାନ୍ଧିଜୀଙ୍କ ପ୍ରାର୍ଥନା ଶୁଣିଲି ପୂର୍ବରୁ, ହିନ୍ଦୁ ସାଂପ୍ରଦାୟିକତା ତାଙ୍କୁ ଚିରଦିନ ଲାଗି ସଂସାରରୁ ହଟାଇ ଦେଇଛି । ତାହା ଭଲକରି ଜାଣେ ଗାନ୍ଧିଜୀ ବଞ୍ଚି ରହିଥିଲେ ପର୍ଯ୍ୟନ୍ତ ସେମାନଙ୍କର ଭବିଷ୍ୟତ ଅନ୍ଧକାର,—ତାଙ୍କର ଅଗଗତି ନାହିଁ ।

ଗାନ୍ଧିଜୀ ତାଙ୍କର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସାଂପ୍ରଦାୟିକତା ବିରୁଦ୍ଧରେ ଲଢ଼ିଛନ୍ତି । ଆଜିର ସାଂପ୍ରଦାୟିକ ଉତ୍ତେଜନା କାଳରେ, ଧର୍ମକୁ ରାଜନୀତିର ଅସ୍ତ୍ର କଲାବେଳେ, ଗାନ୍ଧିଜୀ ସ୍ୱତଃ ମନକୁ ଆସି ଯାଆନ୍ତି । ସ୍ୱାଧୀନତା ପୂର୍ବରୁ ଯେତେବେଳେ ଚତୁର୍ଦ୍ଦିଗରେ ସାଂପ୍ରଦାୟିକ ଦଙ୍ଗା, ପୂର୍ବ ପଟେ ପଞ୍ଜାବରେ ୫୦ ହଜାର ସୈନ୍ୟ ଶାନ୍ତି ରକ୍ଷାରେ ବ୍ୟସ୍ତ, ସେତେବେଳେ ପଶ୍ଚିମପଟେ ବଙ୍ଗଳାରେ କେବଳ ଜଣେ ଲୋକ ଯୋଗୁଁ ଶାନ୍ତି ଅବ୍ୟାହତ ରହିଛି, ସେ ହେଲେ ଗାନ୍ଧିଜୀ । ସ୍ୱାଧୀନତା ପରେ, ପାକିସ୍ଥାନରୁ ହଜାର ହଜାର ଶରଣାର୍ଥୀ ପଳାଇ ଆସିଛନ୍ତି, ଦିଲ୍ଲୀରେ ଭୀଷଣ ଉତ୍ତେଜନା ଓ ସଂଘର୍ଷ, ଦରଘା ଭାଙ୍ଗି ଶରଣାର୍ଥୀମାନେ, ମୁସଲମାନ ଘର ମସଜିଦ ଦଖଲ କରି ରହିଛନ୍ତି, ସେଠି ମୂର୍ତ୍ତି ସ୍ଥାପନ କରି ତାକୁ ମନ୍ଦିରରେ ପରିଣତ କରିଛନ୍ତି, ସେତେବେଳେ ଗାନ୍ଧିଜୀ ଆରମ୍ଭ କରିଛନ୍ତି ତାଙ୍କର ଆମରଣ ଅନଶନ ଜାନୁଆରୀ ୧୩ ତାରିଖ, ୧୯୪୮ ।

ତାଙ୍କର ସର୍ତ୍ତ ହେଉଛି, ଭଙ୍ଗା ଯାଇଥିବା ଖ୍ୱାଜା କୁତବଉଦ୍ଦିନ ଦରଘା ମରାମତି ହେବ, ସେଠାକୁ ଯିବାରେ ଅବାଧ ସ୍ୱାଧୀନତା ରହିବ । ଯେଉଁସବୁ ମୁସଲମାନ ଘର, ମସଜିଦ ଦଖଲ ହୋଇଛି ଓ ମନ୍ଦିରରେ ପରିଣତ ହୋଇଛି ସେଠୁ ଅଣ ମୁସଲମାନମାନେ ହଟିଯିବେ । ଦଙ୍ଗା ପୂର୍ବରୁ ଯିଏ ସେଠି ଥିଲେ ସେମାନେ ସେ ଅଞ୍ଚଳରେ ରହିବେ, ତାଙ୍କପ୍ରତି ସବୁ ବାସନ୍ଦ କଟକଣା ଉଠିବ, ଯେଉଁମାନେ ପାକିସ୍ଥାନକୁ ଯିବାକୁ ଚାହିଁବେ, ଯାଇ ପାରିବେ । ପାକିସ୍ଥାନକୁ ପ୍ରତିଶ୍ରୁତିବଦ୍ଧ ୨୫ କୋଟି ଟଙ୍କା ଦେଇଦେବାକୁ ହେବ ।

ସେ ବିଗରେ କାର୍ଯ୍ୟ କରିବେ ବୋଲି ସରକାର ଯେତେ ପ୍ରତିଶ୍ରୁତି ଦେଲେ ମଧ୍ୟ ଗାନ୍ଧିଜୀ ତାଙ୍କ ଅନଶନରୁ ଟଳିଲେ ନାହିଁ । ସେ କହିଲେ, "ସୈନ୍ୟ ଓ ପୁଲିସଙ୍କ ଦ୍ୱାରା ଧର୍ମ ସ୍ଥାନର ପୁନରୁଦ୍ଧାର ଗୋଟାଏ ନିନ୍ଦନୀୟ କଥା, ତା' ପୁନରୁଦ୍ଧାର ଲୁହେଁ, ତାକୁ ଲୋକମାନେ ନିଜେ କରିବା ଉଚିତ ।" ଏହାପରେ ହିନ୍ଦୁ ମୁସଲମାନ ଶିଖ ନେତାମାନେ ଆସି ଯେତେ ନିବେଦନ କଲେ

ମଧ୍ୟ ଗାନ୍ଧିଜୀଙ୍କୁ ଟଳାଇ ପାରିଲେ ନାହିଁ, ଯେହେତୁ ସେମାନେ ଠିକ୍ ଜାଣିଥିଲେ ନୁହନ୍ତି, ଯେତେବେଳେ ନିଜେ ଶରଣାର୍ଥୀ ହଜାର ସଂଖ୍ୟାରେ ଆସି କହିଲେ ଯେ ମୁସଲମାନମାନଙ୍କୁ ତାଙ୍କ ଘର ଓ ମସ୍‌ଜିଦ ଛାଡ଼ିଦେବେ, ତାଙ୍କୁ ପୁଣି ଫେରାଇ ଆଣିବେ, ତାଙ୍କ ପ୍ରତି ବାସ୍ତବ କଟକଣା ଆଦି ପ୍ରତ୍ୟାହାର କରିବେ ଇତ୍ୟାଦି ସେତେବେଳେ ଯାଇ ଗାନ୍ଧିଜୀ ଅନଶନ ଭଙ୍ଗ କଲେ—ଜାନୁଆରୀ ୧୮, ୧୯୪୮ରେ । ଅନଶନ ଭଙ୍ଗ ପରେ ସେ ଭଙ୍ଗା ଦରଗା ଦେଖିବାକୁ ଗଲେ । ସେଠି ସବୁ ଧର୍ମର ଲୋକେ ବିପୁଳ ସଂଖ୍ୟାରେ କେବଳ ଗାନ୍ଧିଜୀଙ୍କୁ ସ୍ୱାଗତ କଲେ ନାହିଁ, ତାଙ୍କ ସହିତ ଯାଇଥିବା ମାନୁ ଓ ଶିଳ୍ପଙ୍କୁ ମଧ୍ୟ ଦରଗା ଭିତରକୁ ଛାଡ଼ିଦେଲେ, ଯେଉଁଠି ମୁସଲମାନ ଧର୍ମରେ ସ୍ତ୍ରୀଲୋକମାନଙ୍କର ପ୍ରବେଶ ନିଷେଧ—ସେଠି ସେମାନେ ପ୍ରବେଶ କଲେ । ଗାନ୍ଧିଜୀଙ୍କ ପାଇଁ ସେ ନିୟମ ଆପେ ଆପେ ଉଠିଗଲା । ଯେହେତୁ ସେମାନେ ଗାନ୍ଧିଜୀଙ୍କ 'କନ୍ୟା' ।

ନିଜ ଧର୍ମପ୍ରତି ଅଟଳଶ୍ରଦ୍ଧାହିଁ ଗାନ୍ଧିଜୀଙ୍କ ଅନ୍ୟର ଧର୍ମପ୍ରତି ଗଭୀର ସମ୍ମାନର କାରଣ । ମୂଳରୁ ତାହାହିଁ ତାଙ୍କର ନୀତି ହୋଇ ଆସିଛି । ସେ କହନ୍ତି, "ଆମେ ଆଦାମଙ୍କ କାଳରୁ ପ୍ରତିଶୋଧର ନିୟମ ଚେଷ୍ଟାକରି ଆସୁଛୁ । ଆଶାତୀତ ଭାବେ ବ୍ୟର୍ଥ ହୋଇଛୁ ବୋଲି ଆମେ ନିଜ ଅଭିଜ୍ଞତାରୁ ଜାଣୁ···। ···ଏପରିକି ଯଦିଓ ହଜାରେ ମନ୍ଦିର ଭାଙ୍ଗି ଚୂରମାର ହୋଇଯାଏ, ମୁଁ ଗୋଟିଏ ହେଲେ ମସଜିଦ ଛୁଇଁବି ନାହିଁ । ତଦ୍ୱାରା ତଥାକଥିତ ମତାନ୍ଧତାଙ୍କର ବିଶ୍ୱାସ ଅପେକ୍ଷା ମୋର ବିଶ୍ୱାସର ଶ୍ରେଷ୍ଠତା ପ୍ରମାଣ କରିବାକୁ ଚାହିଁବି । ହିନ୍ଦୁମାନେ ମସ୍‌ଜିଦ ଧ୍ୱଂସ କରିବାର ଉଦ୍ୟମ କରିବାରେ ଯେଉଁମାନେ ମନ୍ଦିରକୁ ଅପବିତ୍ର କରନ୍ତି, ସେହି ମତାନ୍ଧତାଙ୍କ ଭଳି ନିଜେ ମତାନ୍ଧ ବୋଲି ପ୍ରମାଣ କରିବାଦ୍ୱାରା, ତାଙ୍କର ଧର୍ମ ବା ମନ୍ଦିର ରକ୍ଷା କରିପାରିବେ ନାହିଁ ।" (୨୪ ଅଗଷ୍ଟ ୧୯୨୪) (*)

---

(*) The law of retaliation we have been trying since the days of Adam, and we know from experience that, it has failed hopelessly;.... Even though thousand temples may be reduced to bits. I would not touch a single mosque and expect thus to prove superiority my faith to the so called faith of fanatics. Hindus wiil not defend their religion or their temples by seeking to destroy mosque and thus proving themselves as fanatical as the fanatics who havebeen discreating temples (Yound India).

ସ୍ୱାଧୀନତାର ପୂର୍ବକ୍ଷଣରେ ସାଂପ୍ରଦାୟିକ ଦଙ୍ଗା ସଂଘର୍ଷ ଅଧିକ ତୀବ୍ର ଓ ବ୍ୟାପକ ହେବାରେ ଗାନ୍ଧୀଜୀଙ୍କ ସ୍ୱର ଆହୁରି କଠୋର ହୋଇ ପଡ଼ିଛି— "ଯେଉଁମାନେ ମସ୍‌ଜିଦକୁ ଅପବିତ୍ର କରନ୍ତି ସେମାନେ ମଣିଷ ନୁହନ୍ତି, ସୈତାନ । କାରଣ ମସ୍‌ଜିଦ, ମନ୍ଦିର ଓ ଗୀର୍ଜା ସବୁ ହେଉଛି ଇଶ୍ୱରଙ୍କ ନିବାସ । ମୁଁ ଏଠାକୁ ଦୁଃଖ ଜଣାଇବାକୁ ଆସିଛି । ତମେ ବୋଧହୁଏ ହସିପାର, ଭାବିପାର ଯେ ଯାହା ଘଟିଗଲା ସେଗୁଡ଼ାକ ଭଲ କଥା । ମୁଁ କିନ୍ତୁ ଦୃଢ଼ ଭାବେ କହିବି ତାହା ଅକାଟ୍ୟ ଅନ୍ୟାୟ । ମୁଁ ଯେତେବେଳେ ଶୁଣେ ଯେ ମୁସଲମାନମାନେ ଏକ ମନ୍ଦିର ଅପବିତ୍ର କରିଛନ୍ତି, ମୁଁ ଶୋକାଭିଭୂତ ହୋଇପଡ଼େ; ମୁଁ କ'ଣ ଗୋଟାଏ ମସ୍‌ଜିଦକୁ ଅପବିତ୍ର କରି ତା'ର ବଦଲା ନେବି ? ସେପରି ଷଡ ସାଧନ ଦ୍ୱାରା ମନ୍ଦିର କିପରି ବା ରକ୍ଷା ହୋଇପାରେ ବା ହିନ୍ଦୁ ଧର୍ମ କିପରି ବା ଲାଭବାନ ହେବ ?" (୧୪ ମାର୍ଚ୍ଚ ୧୯୪୭ ପାଟନା ପ୍ରାର୍ଥନା ସଭାରେ) ।

ଗାନ୍ଧିଜୀଙ୍କ ସେଇ ବାଣୀ ବର୍ତ୍ତମାନ ଅବସ୍ଥାରେ ବିଶେଷ ଗୁରୁତ୍ୱପୂର୍ଣ୍ଣ । ମସ୍‌ଜିଦ ଭଙ୍ଗା ହିନ୍ଦୁ ସାଂପ୍ରଦାୟିକତାର ଏକ ରଣଧ୍ୱନି ହୋଇଛି । ବାବରି ମସ୍‌ଜିଦ ପଛକୁ କାଶୀ ମଥୁରାର ମସ୍‌ଜିଦ ଭଙ୍ଗାର ଡାକ ପଡ଼ିଛି, ଆଉ କେତେକ ଭାରତରେ ତିନି ହଜାର ମସ୍‌ଜିଦ ଭାଙ୍ଗିବାର ଦାବୀ ଉଠାନ୍ତି । ତାଙ୍କ ମତରେ ତାହା ସବୁ ପୂର୍ବର ମନ୍ଦିର ଉପରେ ନିର୍ମିତ ହୋଇଛି ।

ଏସବୁର ଅସଲ ଉଦ୍ଦେଶ୍ୟ ରାଜନୈତିକ । ଧର୍ମ ମନ୍ଦିର ମସ୍‌ଜିଦ ଏସବୁ ଗୋଟାଏ ଗୋଟାଏ ଉପାୟ ବା ଆବରଣ ମାତ୍ର । ସାଂପ୍ରଦାୟିକତା ଭାବରେ

ଲୋକଙ୍କୁ ଅନୁପ୍ରାଣିତ ଉତ୍ତେଜିତ କରି ହିନ୍ଦୁ ରାଷ୍ଟ୍ର ଗଠନ ପଥରେ ନେଇ ଯିବା ହେଲା ମୁଖ୍ୟ ଉଦ୍ଦେଶ୍ୟ । ଆର୍. ଏସ୍. ଏସ୍. ଓ ହିନ୍ଦୁ ମହାସଭା ଠିକ୍ ସେହି ଉଦ୍ଦେଶ୍ୟ ନେଇ ଗଠିତ । ଆର୍. ଏସ୍. ଏସ୍. ତାକୁ ଯୋଜନାବଦ୍ଧ ଭାବେ କାର୍ଯ୍ୟକାରୀ କରିବାରେ ଲାଗିଛି । ବି. ଜେ. ପି, ବିଶ୍ୱ ହିନ୍ଦୁ ମହାସଭା, ବଜରଙ୍ଗ ଦଳ ଆଦି ସେହି ଆର୍. ଏସ୍. ଏସ୍.ର ତାଲିମପ୍ରାପ୍ତ କ୍ୟାଡ଼ରଙ୍କ ଦ୍ୱାରା ପରିଚାଳିତ । ଆର୍. ଏସ୍. ଏସ୍.ର ତତ୍ତ୍ୱବିତ୍ ସଞ୍ଚାଳକ ଗୋଲ୍‌ୱାଲକର ପ୍ରଥମରୁ ୧୯୩୮ରୁ ତାଙ୍କ ପ୍ରକାଶିତ 'We or our Nationhood Defined' ପୁସ୍ତକରେ ତାହା ପରିଷ୍କାର ଭାବେ ଜଣାଇ ଦେଇଛନ୍ତି ।

"...ହିନ୍ଦୁସ୍ଥାନରେ, ଅଣହିନ୍ଦୁ ଲୋକଙ୍କୁ ହୁଏତ ନିଶ୍ଚିତ ଭାବେ ହିନ୍ଦୁ ସଂସ୍କୃତି ଓ ଭାଷା ଗ୍ରହଣ କରିବାକୁ ହେବ, ହିନ୍ଦୁ ଧର୍ମକୁ ସମ୍ମାନ ଓ ମର୍ଯ୍ୟାଦା ଦେବା ଶିକ୍ଷା କରିବାକୁ ହେବ, ହିନ୍ଦୁ ଜାତିର ଗୌରବ ଗାନ ଛଡ଼ା ଅନ୍ୟ

କୌଣସି ଭାବ ପୋଷଣ କରିବାକୁ ହେବ ନାହିଁ,— ଅର୍ଥାତ୍ ସେମାନଙ୍କୁ କେବଳ ଏହି ଦେଶ ଓ ତା'ର ଯୁଗ ଯୁଗର ଐତିହ୍ୟ ପ୍ରତି ତାଙ୍କର ଅସହନଶୀଳ ଅକୃତଜ୍ଞ ମନୋଭାବକୁ କେବଳ ପରିତ୍ୟାଗ କରିବାକୁ ହେବ ନାହିଁ, ତା' ପରିବର୍ତ୍ତେ ସେମାନଙ୍କୁ ନିଶ୍ଚିତ ଭାବେ ପ୍ରେମ ଓ ଭକ୍ତିର ଆସ୍ତିବାଚକ ମନୋଭାବ ପୋଷଣ କରିବାକୁ ପଡ଼ିବ । ପଦେକଥାରେ କହିଲେ, ସେମାନଙ୍କୁ ବିଦେଶୀ ହେବା ବନ୍ଦ କରିବାକୁ ହେବ କିମ୍ବା ସେମାନେ ଏ ଦେଶରେ ରହିପାରନ୍ତି କିନ୍ତୁ ପୁରାପୁରି ହିନ୍ଦୁଙ୍କର ଅଧୀନସ୍ଥ ହୋଇ ରହିବେ କିଛି ଦାବି ନକରି, କୌଣସି ପ୍ରକାର ସୁବିଧା ନଖୁଜି, କୌଣସି ବିଶେଷ ବ୍ୟବହାରର ପାଇବାର ଆଶାରଖି, —ଏପରିକି ନାଗରିକ, ଗଣତାନ୍ତ୍ରିକ ଅଧିକାର ଦାବି ନକରି ।" (P. 27) *

ସେ ଏହି ଶିକ୍ଷାଲାଭ କରିଛନ୍ତି ଫାସିଷ୍ଟ ଜର୍ମାନୀରୁ । ସେହି ଢାଞ୍ଚାରେ ଗଢ଼ିବାକୁ ଚାହାନ୍ତି ଭାରତର ସଂସ୍କୃତିକୁ । ସେହି ପୁସ୍ତକରେ ଉଲ୍ଲେଖ ରହିଛି "ଜର୍ମାନୀ ତା'ର ଜାତିର, ସଂସ୍କୃତିର ଶୁଦ୍ଧ ନିର୍ମଳତା ରକ୍ଷା ଦିଗରେ ଦେଶରୁ ସେମିଟିକ୍ (ୟହୁଦି-ମାନଙ୍କୁ) ସାଫକରି ଦୁନିଆକୁ ସ୍ତମ୍ଭିତ କରି ଦେଇଛି । ସର୍ବୋଚ୍ଚ ଜାତୀୟ ଗର୍ବ ଗୌରବ ସେଠାରେ ପ୍ରକାଶ ପାଏ । ଜର୍ମାନୀ ଜାତି ଦର୍ଶାଇ ଦେଇଛି, ଅଗରୁ ମୂଳ ଯାଏ ପୃଥକ ଜାତି ଓ ସଂସ୍କୃତିକୁ ଗୋଟାଏ କରି ଅଙ୍ଗୀଭୂତ କରିବା ସଂପୂର୍ଣ୍ଣ ଅସମ୍ଭବ । ତାହା ଶିଖି, ତଦ୍ୱାରା ଉପକୃତ ହେବାଦିଗରେ ହିନ୍ଦୁସ୍ଥାନ ଲାଗି ତା' ଏକ ଉତ୍ତମ ଉପଦେଶ ।" (ଉପରୋକ୍ତ ପୁସ୍ତକ ପୃ-୫୨) **

---

(*) ...the non-Hindu people in Hindustan must either adopt the Hindu culture and language, must learn to respect and revare Hindu religion, must entertain no idea but glorification of the Hindu nation i.e. they must not only give up their attitude of intolerance and ingratitude towards this land and its age old traditions, but also cultivate the positive attitude of love and devotion instead, in one word they must cease to the foreigners or may stay in the country subordinated to Hindu nation, claiming nothing, demanding no privilages far less my preferential treatment, not even citizen's rights.(M.S Golwalkar, We our Nationhood Defined 1938,P-52)

** 'To keep the purity of the nation and its culture, Germany has showed the world by her purging the country of semitie raoes—the Jews. National pride at its highest has been manifested here. Germany has also shown how well-nigh impossible it is for races and culture, having difference going to the root, to be assimilated into one unified whole, good lesson for us in Hindustan to learn and profit by. (P. 2 )

ଏହା ଅତି ସ୍ପଷ୍ଟ ଭାବେ ଜଣାଇଦଏ, ହିନ୍ଦୁ ରାଷ୍ଟ୍ର ଗଠନରେ ଫାସିଷ୍ଟ ଜର୍ମାନୀ ହେଉଛି ଭାରତର ଆଦର୍ଶ । ତାହା ଯେପରି ସେହି ଇହୁଦୀ ବା ଜୁଉମାନଙ୍କୁ ମାରି, ହାଣି, ତଡ଼ି, ଦମନ କରି, ସଫାକରି, ଜର୍ମାନୀକୁ ଶୁଦ୍ଧ ନିର୍ମଳ ପବିତ୍ର କରି ଦେଇଛି, ଏଠି ବିଦେଶୀମାନଙ୍କ ପ୍ରତି ସେହିପରି ବ୍ୟବହାର କରିବାକୁ ହେବ । ଯେଉଁମାନେ ରହିବେ ସେମାନେ କେବଳ ଦାସ ଭଳି ରହିବେ । ବର୍ତ୍ତମାନ ହିନ୍ଦୁ ସାଂପ୍ରଦାୟିକତାର ପ୍ରତ୍ୟେକ ପଦକ୍ଷେପ ଠିକ୍ ଠିକ୍ ସେହି ଫାସିଷ୍ଟ ଜର୍ମାନୀର "ଉତ୍ତମ ଶିକ୍ଷା"ର ନିର୍ଦ୍ଦେଶ ଅନୁଯାୟୀ ଚାଲିଛି ।

ଠିକ୍ ଏଇ ମତବାଦକୁ ଗାନ୍ଧିଜୀ ପ୍ରତି ପଦେ ପଦେ ପ୍ରତିହତ କରି ଆସିଛନ୍ତି । ସାଂପ୍ରଦାୟିକ ସଂହତି ଲାଗି ତାଙ୍କର ଶେଷ ଅନଶନ ପରେ ଗାନ୍ଧିଜୀ ଦିଲ୍ଲୀଠାରେ ପ୍ରାର୍ଥନା ସଭାରେ ୧୪ ଜାନୁଆରୀ ୧୯୪୮ରେ ସୂଚାଇ ଦେଇଥିଲେ,—

"ମୋର କିଶୋର ଜୀବନର ଆରମ୍ଭରେ ରାଜନୀତି ବିଷୟରେ କିଛି ଜାଣିବା ଆଗରୁ ମୁଁ ହୃଦୟର ସାଂପ୍ରଦାୟିକ ସଂହତିର ସ୍ୱପ୍ନ ଦେଖିଥିଲି । ମୋର ଜୀବନର ସାୟଂ କାଳରେ ମୋର ସେଇ ଜୀବନର ସ୍ୱପ୍ନ ଯେ ସାର୍ଥକ ହୋଇଛି, ତାହା ଅନୁଭବ କଲେ ମୁଁ ପିଲାଙ୍କ ଭଳି ନାଚିଉଠିବି···ସେତେବେଳେ ଆମେ ପ୍ରକୃତ ସ୍ୱରାଜ୍ୟ ପାଇବା । ଯଦିଓ ଆଇନତଃ ଓ ଭୌଗୋଳିକ ଦୃଷ୍ଟିରୁ ଆମର ଦୁଇଟା ରାଷ୍ଟ୍ର ହୋଇଥାଏ, ତେବେ ସେତେବେଳେ ଦୈନନ୍ଦିନ ଜୀବନରେ କେହି ଭାବିବ ନାହିଁ ଯେ ଆମେ ଦୁଇଟା ଅଲଗା ଅଲଗା ରାଷ୍ଟ୍ର,···ସେହି ସ୍ୱର୍ଗ ରାଜ୍ୟରେ, ତାହା ଇଣ୍ଡିଆରେ ହେଉ ବା ପାକିସ୍ଥାନରେ ହେଉ, ସେଠି କେହି ନିଃସ୍ୱ କି ଭିକାରୀ କିମ୍ବା କେହି ବଡ଼ ବା ସାନ, କେହି କୋଟିପତି ମାଲିକ ବା ଅର୍ଦ୍ଧାହାରୀ କର୍ମଚାରୀ ହୋଇ ରହିବେ ନାହିଁ । ସେଠି ପୁରୁଷ ପାଇଲା ଭଳି ନାରୀମାନେ ସମାନମର୍ଯ୍ୟାଦାର ଅଧିକାରୀ ହେବେ । ଅସ୍ପୃଶ୍ୟତା ରହିବ ନାହିଁ । ସବୁ (ଧର୍ମ) ବିଶ୍ୱାସ ସମାନ ସମ୍ମାନ ଲାଭ କରିବ ।

"ମୋର ଆଶା, ପ୍ରତ୍ୟେକ ଲୋକ ଯିଏ ମୋତେ ଶୁଣିଛି, ମୋର ଏଇ କେତେ ଧାଡ଼ି ପଢ଼ିଛି··· ମୋତେ କ୍ଷମା କରିବ···ଯଦି ମୁଁ ବକ୍ତୃତାରେ

ନିଜକୁ ଲମ୍ବେଇ ଦେଇ, ଖଟରେ ଉଷୁମ ଟାଣି ସେହି ପ୍ରାଣପ୍ରଦାୟିନୀ ରୌଦ୍ର କିରଣ ସେବନ କରି, ମୋର କାମନା ପୂରଣର ପରମାନନ୍ଦ ଭିତରେ ଆପଣାକୁ ଭସାଇ ଦିଏ।'' [ ଦିଲ୍ଲୀ ପ୍ରାର୍ଥନାସଭା ୧୪ ଜାନୁଆରୀ ୧୯୪୮ ] (*)

ଏହା ହିଁ ଥିଲା ଗାନ୍ଧିଜୀଙ୍କର ଅନ୍ତିମ ଲକ୍ଷ୍ୟ । ଦେଶର ବିଭାଜନ ଘଟିଲେ ବି, ଦୁଇ ରାଷ୍ଟ୍ରର ଲୋକଙ୍କର ବାସ୍ତବ ଜୀବନକୁ ସେଇ ବିଭାଜନର ଚିହ୍ନକୁ ଚିରଦିନ ଲାଗି ପୋଛି ଦେବା, ଆଉ ସେହି ଜୀବନକୁ ଏପରି ବାସ୍ତବ କରି ଗଢ଼ିବା ଯେଉଁଠି ଧନୀ ଓ ନିର୍ଦ୍ଧନର ପାର୍ଥକ୍ୟ ବା ବିଭାଜନର ପ୍ରଭାବ ମଧ୍ୟ ପୋଛି ହୋଇଯିବ । ଧର୍ମ ଓ ଧନ ଦିଗରୁ ଦେଶ ଦେଶ ଓ ଲୋକ ଲୋକ ଭିତରେ ବିଭାଜନର ବିପଦକୁ ଦୂରକରିବା ସ୍ୱାଧୀନତା ପରେ ନୂତନ ଅବସ୍ଥାରେ । ତାହା ଗାନ୍ଧିଜୀଙ୍କର ଲକ୍ଷ୍ୟକୁ ପ୍ରକାଶ କରେ ।

କିନ୍ତୁ ଯେଉଁମାନେ ଫାସିଷ୍ଟ ହିଟଲରର ଆଦର୍ଶର ସ୍ତାବକ, ତା'ର ଜାତିଗତ ବିଦ୍ୱେଷ ଓ ଏକଚ୍ଛତ୍ର ଶାସନରେ ଅନୁପ୍ରାଣିତ ଓ ମଣିଷ ମଣିଷ ମଧ୍ୟରେ ସାମ୍ୟ ପ୍ରେମ ଓ ଭ୍ରାତୃତ୍ୱର ଭାବକୁ ଲୋପ କରିବାରେ ବଦ୍ଧପରିକର, ଏବଂ ଆଜି ତା'ର ସେହି ହିଂସା ହତ୍ୟା ସଂଘର୍ଷର ମାର୍ଗରେ ଅଗ୍ରସର, ସେମାନେ ଗାନ୍ଧିଜୀଙ୍କ ସେହି

(*) Before I know anything about politics in my early youth, I dreamt the dream of communal unity of the heart. I shall jump in the evening of my life, like a child, to feel that the dream has been realised in this life ......Then we shall have the real swaraj. Then though legally and geographically we may still be two states...In such paradise where it is in the Union or Palistan, there will be neithes paupes, nor beggars nor high no low, neither millionaire nor half-starved employees...There will be same respect for women as vouchasafed to men...no untouchbility...equal respect for all faith——I hope that every one who listens to me or reads these lines, will forgive me—. If streached on my bed and basking in the such inhaling the life giving sunshine, I alow myself to indulge in this ecstay——.

(at the prayer meeting during Gandhiji's last fast for communal harmony -- Delhi January 14, 1948).

ସାଂପ୍ରଦାୟିକ ଐକ୍ୟ, ସାମ୍ୟ ଓ ମାନବିକତାର ଆହ୍ୱାନରେ ଆତଙ୍କିତ ହୋଇ ଉଠିଥିଲେ । କାରଣ, ତାଙ୍କର ସେହି ଦୁଇ ମତ, ଦୁଇ ତତ୍ତ୍ୱ, ଦୁଇ ଲକ୍ଷ୍ୟ ଆଉ ଦୁଇ ପଥ ମଧ୍ୟରେ କୌଣସିଠି ସାମାନ୍ୟ ସାଲିସର ପ୍ରଶ୍ନ ନାହିଁ । ଗାନ୍ଧିଜୀ ବଞ୍ଚିଥିଲା ପର୍ଯ୍ୟନ୍ତ ତାଙ୍କର ସେ ଆହ୍ୱାନ ପ୍ରତିଦିନ ପ୍ରତିଧ୍ୱନିତ ହେଉଥିବ । ତାକୁ ପ୍ରତିହତ କରିବାର ଅନ୍ୟ କୌଣସି ଉପାୟ ହିନ୍ଦୁ ସାଂପ୍ରଦାୟିକତା ଦେଖି ନାହିଁ । ଶେଷରେ ତାଙ୍କୁ ଚିରଦିନ ଲାଗି ନିସ୍ତବ୍ଧ କରି ଦେଇଛି । ଗାନ୍ଧିଜୀଙ୍କ ଉପରୋକ୍ତ ଆହ୍ୱାନର ଠିକ୍ ୧୭ ଦିନଠି ତାଙ୍କର ହତ୍ୟା ।

ଗାନ୍ଧିଜୀଙ୍କ ସେହି ହତ୍ୟା କ'ଣ ଧର୍ମ-ସାଂପ୍ରଦାୟିକତା ଓ ରାଜନୀତିର ମିଶ୍ରଣର ଫଳ ନୁହେଁ ? ଲୋକଙ୍କ ମଧ୍ୟରେ ଧନୀ ଦାରିଦ୍ର୍ୟ ପାର୍ଥକ୍ୟର ଦୂରୀକରଣ କ'ଣ ରାଜନୀତିର ବାହାରେ ? ସେହି ହତ୍ୟାର ପ୍ରତ୍ୟକ୍ଷ କର୍ତ୍ତା ଓ ସଦ୍ୟ କାରଣ କ'ଣ ସେହି ଧର୍ମ-ରାଜନୀତିରୁ ଉଦ୍‌ଭବ ନୁହେଁ ? ଧର୍ମ ଓ ରାଜନୀତିର ସେହିପରି ସମ୍ପର୍କ ଲାଗିଥିଲା ଓ ବଢ଼ୁଥିଲା ପର୍ଯ୍ୟନ୍ତ କ'ଣ ସେହି ଅବସ୍ଥାର ପୁନରାବୃତ୍ତିକୁ କେବେ ରୋକା ଯାଇପାରେ ? ପରବର୍ତ୍ତୀ କାଳର ସେହି ଧର୍ମାନ୍ଧତା ଓ ରାଜନୀତିର ସମ୍ପର୍କ କ'ଣ ସାଂପ୍ରଦାୟିକ ଦଙ୍ଗା, ସଂଘର୍ଷକୁ ଅଧିକ ବ୍ୟାପକ କରି ନାହିଁ ? ବାବରୀ ମସ୍‌ଜିଦର ଧ୍ୱଂସ କ'ଣ ତା'ର ଯୋଜନାବଦ୍ଧ କାର୍ଯ୍ୟର ଫଳ ନୁହେଁ ? ସେହି ଧର୍ମ ଓ ରାଜନୀତିର ମିଶ୍ରଣର ଫଳ କ'ଣ ଆଜି ହିନ୍ଦୁ ରାଷ୍ଟ୍ର ଗଠନର ଧ୍ୱନି ଜନ୍ମ ନେଇ ନାହିଁ ?

୨

ସେ ଦିନ ଗାନ୍ଧିଜୀଙ୍କ ହତ୍ୟା ଭାରତ ବକ୍ଷରେ ଯେଉଁ କ୍ଷତ ସୃଷ୍ଟି କରିଥିଲା, ଆଜି ତାହା ବାବରୀ ମସ୍‌ଜିଦ ଘଟଣାଦ୍ୱାରା ଆହୁରି ବିଷାକ୍ତ, ବିଭତ୍ସ ଆଉ ବିପଜ୍ଜନକ ହୋଇ ଉଠିଛି । ସେ ଦିନର ସେହି ହତ୍ୟା ଭାରତର ଐକ୍ୟ, ସଂହତି, ପରମ୍ପରା ଓ ତା'ର ଭବିଷ୍ୟତର ଘାତକ ଭାବେ ଦେଖା ଦେଇଛି । ଜାତିର ସେହି ପିତାର ହତ୍ୟା, ଆଜି ପ୍ରକାଶ ପାଉଛି ଦେଶର ସମ୍ବିଧାନର ହତ୍ୟା ଓ ତା'ର ଆଇନ ଶାସନ ହତ୍ୟାରେ । ତାହାକୁ ଯେଉଁ ଆଖ୍ୟା ଦେଲେବି ତାହା ଥିଲା ଏକ ସୁଚିନ୍ତିତ ଷଡ଼ଯନ୍ତ୍ର । କିନ୍ତୁ ବାବରୀ ମସ୍‌ଜିଦର ଧ୍ୱଂସ, ଦେଶ ପ୍ରକାଶ୍ୟରେ, ଯୋଜନାବଦ୍ଧ ଭାବେ, ବ୍ୟାପକ ପ୍ରଚାର, ସଙ୍ଗଠନ ଓ ଆନ୍ଦୋଳନ ଅଭିଯାନ ଦ୍ୱାରା ସାଧିତ ହୋଇଛି । ସେଥିଲାଗି ପୌରାଣିକ ରଥଯାତ୍ରାଠାରୁ ଆରମ୍ଭ କରି, ଭି. ଡ଼ି. ଓ. ଟେପ୍ ଓ କ୍ୟାସେଟ୍ ଆଦି ସମସ୍ତ ପ୍ରକାର ଆଧୁନିକ ଇଲେକ୍‌ଟ୍ରୋନିକ ମେଡ଼ିଆ ବ୍ୟବହୃତ ହୋଇଛି, ଆଉ ତାହା ସମ୍ପାଦିତ ହୋଇଛି, ବି. ଜେ. ପି. ସରକାରୀ ଦଳର ସାହାଯ୍ୟରେ, ଖୋଦ ମାଜିଷ୍ଟ୍ରେଟ, ପୁଲିସବାହିନୀଙ୍କ

ସମ୍ମୁଖରେ । ବାବରି ମସ୍‌ଜିଦ ଭାଙ୍ଗିବାରେ ହିନ୍ଦୁ ସାଂପ୍ରଦାୟିକତାବାଦୀ ମାନେ କେବଳ ଗର୍ବିତ ନୁହନ୍ତି, ତାକୁ ଭିତ୍ତିକରି (Referendum) ନିଷ୍ପତ୍ତିମୂଳକ ଗଣଭୋଟ ଦାବୀ ମଧ୍ୟ କରନ୍ତି ।

ଦିନେ ଅଯୋଧ୍ୟା-ବାବ୍ରୀ ମସ୍‌ଜିଦ ରାମଜନ୍ମଭୂମି ଥିଲା—ହିନ୍ଦୁ ମୁସଲମାନ ଦୁଇ ଧର୍ମର ମିଳନର ସ୍ଥଳ । ସେହି ମିଳନ ରୂପ ନେଇଥିଲା ଦୁଇ ସଂପ୍ରଦାୟର ସହୀଦଙ୍କ ରକ୍ତରେ ରଞ୍ଜିତ ସଂଗ୍ରାମ ଭିତରେ ତାହା ଥିଲା ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଐକ୍ୟବଦ୍ଧ ପଦକ୍ଷେପର ସଙ୍କେତ । ଆଉ ଆଜି ଠିକ୍ ସେହି ସ୍ଥାନ, ସାଂପ୍ରଦାୟିକ ହିଂସା, ଦ୍ୱେଷ ଓ ସଂଘର୍ଷର ମାଧ୍ୟମ ରୂପେ ବ୍ୟବହୃତ । ଯେଉଁ ମସ୍‌ଜିଦର ନିର୍ମାତା ବାବର ସହନଶୀଳତାର ଡାକ ଦିଅନ୍ତି, ଯେଉଁଠି ପରମ ରାମଭକ୍ତ ସନ୍ଥ ତୁଳସୀ ଦାସ ମସ୍‌ଜିଦକୁ ନିଜର ଆଶ୍ରୟ ସ୍ଥଳ କରନ୍ତି, ଆଜି ଠିକ୍ ତାହାହିଁ ହୁଏ ଧର୍ମଗତ ବିବାଦ, ସାମାଜିକ ଅସ୍ଥିରତା ଓ ରାଜନୈତିକ ଅନୈକ୍ୟର ଆଧାର । ଏବେ ସେଇଠୁ ଆସେ ଭାରତୀୟ ଐକ୍ୟର ଧ୍ୱଂସକାରୀ ଆହ୍ୱାନ ।

ଅଥଚ ଏକଦା ସେଇ ସ୍ଥାନଟି ଥିଲା ଭାରତର ଐକ୍ୟବଦ୍ଧ ସଂଗ୍ରାମର ଏକ ଘାଟି । ସେଇଠି ପଡ଼ିଥିଲା ୧୮୫୭ରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ସେନାନୀଙ୍କ ଛାଉଣୀ । ମୁସଲମାନ ସୈନ୍ୟମାନେ ମସ୍‌ଜିଦ ଭିତରେ ପ୍ରାର୍ଥନା କଲାବେଳେ, ହିନ୍ଦୁ ସୈନ୍ୟମାନେ ପ୍ରାର୍ଥନା କରୁଥିଲେ ମସ୍‌ଜିଦର ବାହାର ବେଢ଼ାରେ ନିର୍ମିତ ରାମ ଚବୁତରାରେ । ସାଂପ୍ରଦାୟିକ ଐକ୍ୟର ଏକ ଅଲଭ୍ୟ ନିଦର୍ଶନ ତା'ର ଆହ୍ୱାନ ସୁଦୂର ପରିଣତିକୁ ଇଂରେଜ ରାଜ ଭଲକରି ବୁଝେ । ଶେଷରେ ତାହା ସେଇ ସଂପ୍ରଦାୟର ଦୁଇଧର୍ମଗୁରୁ ମୌଲବୀ ମିର୍‌ଅଲି ଏବଂ ମହନ୍ତ ରାମଚନ୍ଦ୍ର ଦାସ ଉଭୟଙ୍କୁ ସେଇଠି ଫାଶୀଖୁଣ୍ଟରେ ଝୁଲାଇଦିଏ, ତଦ୍ୱାରା ନିଜର ଉଦ୍ଦେଶ୍ୟସାଧନ କରେ, ଆମର ବର୍ତ୍ତମାନର ଅବସ୍ଥା କ'ଣ ତା'ର ପ୍ରମାଣ ନୁହେଁ ?

ସେହି ଦୁଇ ଅମର ଶହୀଦଙ୍କର ମହାନ ଐକ୍ୟର ଆହ୍ୱାନ, ତାଙ୍କର ସେହି ଅମ୍ଳାନ ସ୍ମୃତିର ନିତ୍ୟ ନିନାଦିତ ବାଣୀ ଆଉ ତାଙ୍କର ସେହି ଆତ୍ମ ଉତ୍ସର୍ଗର ଜ୍ୱଳନ୍ତ ଇଙ୍ଗିତ କ'ଣ ବର୍ତ୍ତମାନର ବଂଶଧରଙ୍କ ଦ୍ୱାରା ପ୍ରତ୍ୟାଖ୍ୟାନ ହେବ ?

ସେଠି ବାବ୍ରୀ ମସ୍‌ଜିଦ୍‌ର ନିର୍ମାଣ ହୁଏ ଖ୍ରୀ: ୧୫୨୮।୨୯ରେ । ସନ୍ଥ ତୁଳସୀ ଦାସ, ତାଙ୍କର ରାମଚରିତ ମାନସ ରଚନା କରନ୍ତି, ତା'ର ମାତ୍ର ପଚାଶ ବର୍ଷ ପରେ ୧୫୭୫।୭୬ରେ । ସେ ଯେପରି ପରମ ରାମଭକ୍ତ ସେଇପରି ଚରମ ନିର୍ଭୀକ;

ତାହାକୁ ଖାତିର କରିବା ଲୋକ ନୁହନ୍ତି । ଏପରିକି ଆକବର ଭଳି ମହାପ୍ରତାପୀ ସମ୍ରାଟଙ୍କ ନିମନ୍ତ୍ରଣକୁ ସେ ପ୍ରତ୍ୟାଖ୍ୟାନ କରି ଦିଅନ୍ତି । କହନ୍ତି ସେ ରାମଙ୍କ ଛଡ଼ା ଅନ୍ୟ କାହାର ଦରବାରକୁ ସେ ଯିବାର ଲୋକ ନୁହନ୍ତି । ତୁଳସୀ ଦାସ ଅଯୋଧ୍ୟାର ଲୋକ । ବାବର ଯଦି ସେଠି ରାମ ମନ୍ଦିର ଭାଙ୍ଗି, ତା' ସ୍ଥାନରେ ମସଜିଦ୍ ଗଢ଼ି ଥାଆନ୍ତେ, ତାହା ତୁଳସୀଙ୍କ ଲାଗି ସବୁଠୁ ଦୁଃଖଦାୟକ ଘଟଣା ହୋଇ ଥାଆନ୍ତା । ସେ ପାଗଳ ହୋଇଯାଇଥାନ୍ତେ, ସେ କେବେହେଲେ ସେଇ ବିଷୟରେ ଉଲ୍ଲେଖ ନକରି ଚୁପ ରହିପାରି ନଥାନ୍ତେ । ଓଲଟି ସେ କିପରି ବ୍ରାହ୍ମଣଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଛନ୍ତି, ତା'ର ସୂଚନା ତାଙ୍କର ଲେଖାରୁ ମିଳେ । ନୀଚ ଜାତିର ଲୋକ ହୋଇଥିବାରୁ ସେ କାଶୀ ବ୍ରାହ୍ମଣଙ୍କଦ୍ୱାରା ନିପୀଡ଼ିତ ଓ ଥଟ୍ଟା ପରିହାସର ପାତ୍ର ହୋଇଛନ୍ତି । ଶେଷରେ ତାଙ୍କର ଆଶ୍ରୟସ୍ଥଳୀ ହୋଇଛି ମସ୍‌ଜିଦ ।

ତାଙ୍କର ଦୋହା କହେ,—"ଧୂତ କହୋ ଅବଧୂତ କହୋ, ରାଜପୁତ କହୋ ଜୋଲ୍ହାର କହୋ, କୁ ବୁ କାହୋ କି ବେଟି ସେ ବେଟା ନା ବେସ୍ଥାଇବ, କାହା କି ଜାତି ବିଗାର ନ ଲଇନୁ ତୁଳସୀ ଶରନ ଗୁଲାମ ହେଁ ରାମକା, ଯାକୋ ରୁଚି ସେ ଖାଏ କୁଛୁ, ବହୁ ମାଙ୍ଗକେ ଖାଇବୋ, ମସ୍‌ଜିଦ୍ ମେଁ ଶୋଇବ; ଲଇବ କୋ କେ ନା ଦଇବ କୋ ଦୋଉ ।" "ମୋତେ ଠକ କୁହ, ବୈରାଗୀ କୁହ, ରାଜପୁତ କୁହ ବା ତନ୍ତୀ (ମୁସଲମାନ) କୁହ, ମୋର ପୁଅ ନାହିଁ କି ଝିଅକୁ ବାହା ଦେଇ, ଜାତି ନେବାକୁ, ତୁଳସୀ ରାମର ଦାସ ଭାବେ ପରିଚିତ, ଯେ କୌଣସି ଲୋକ ଯେମିତି ଡାକୁ ପଛେ, ସିଏ ଭିକ୍ଷାକରି ବଞ୍ଚି ମସଜିଦ୍‌ରେ ଶୁଏ, ତା'ର କାହାକୁ କିଛି ଦେବାର ନାହିଁ କି ନେବାର ନାହିଁ"—ଇଏ ହେଲା ତୁଳସୀ ଦାସ—ରାମଭକ୍ତର ମସ୍‌ଜିଦ ଆଶ୍ରା -ଜୀବନ ।

ତେଣେ ବାବରଙ୍କ ପ୍ରତି ମନ୍ଦିର ଭଙ୍ଗାର ଅଭିଯୋଗ ଆରୋପ କରାଯାଏ, ଯେ ବିଷୟରେ ଅନ୍ୟ କେହି ନୁହେଁ, ଭାରତୀୟ ଧର୍ମ ସଂସ୍କୃତିର ଅବିସମ୍ବାଦୀ ପୁରୋଧା ସ୍ୱୟଂ ସାଇବାବା କ'ଣ କହନ୍ତି ଶୁଣାଯାଉ—

"ପ୍ରାଚୀନ ଯୁଗରୁ ଭାରତ ସେବାର ମାର୍ଗ ଧରି ଆସିଛି । ତାହା କେବଳ ଭାରତୀୟଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ ।" ମୋଗଲ ସମ୍ରାଟ ବାବର ଥରେ ତାଙ୍କର ପୁଅ ହୁମାୟୁନଙ୍କୁ ତାଙ୍କର ସିଂହାସନ ଆରୋହଣ କାଳରେ ଲେଖିଥିଲେ—

"ଭାରତ ଏକ ଦେଶ ଯିଏ କି ଭଗବାନଙ୍କ ପ୍ରତି ତା'ର ଶ୍ରଦ୍ଧାଭକ୍ତି ଯୋଗୁ ପ୍ରସିଦ୍ଧ । ସିଏ ଏକ ମହାନୁଭବ ଦେଶ, ତା' ସବୁ ବିଶ୍ୱାସର ଲୋକଙ୍କୁ ଆଶ୍ରୟ ଦେଇଛି । ଭାରତୀୟ ସଂସ୍କୃତି ଏକ ଆଶ୍ଚର୍ଯ୍ୟଜନକ ଅଦ୍‌ଭୁତ ସଂସ୍କୃତି । ତାହା କେଉଁ ଅଜ୍ଞାତ କାଳରୁ ଭାରତୀୟମାନଙ୍କ ଦ୍ୱାରା ପାଳିତ ଓ ପରିପୁଷ୍ଟ ହୋଇ

ଆସୁଛୁ । ଅନ୍ୟ କୌଣସି ବିଶ୍ୱାସର ଏପରି ସର୍ବବ୍ୟାପୀ ଦୃଷ୍ଟିକୋଣ ନାହିଁ । ତୁମର ବଡ଼ଭାଗ୍ୟ ଯେ ତୁମେ ଏପରି ଏକ ଦେଶର ସମ୍ରାଟ ହେବାକୁ ଯାଉଛ । ତୁମ ପ୍ରତି ଏପରି ଆଶୀର୍ବାଦ ହେତୁ ଭଗବାନଙ୍କ ନିକଟରେ ତୁମକୁ କୃତଜ୍ଞହେବାକୁ ହେବ । ଭାରତୀୟ ଧର୍ମର ଆଚାର ବ୍ୟବହାର ଉପରେ କୌଣସି କଟକଣା ପ୍ରୟୋଗ କରିବା ଉଚିତ ନୁହେଁ । ଭାରତୀୟ ସଂସ୍କୃତି ବିରୁଦ୍ଧରେ ଯିବ ନାହିଁ । ଜଣେ ଶାସକ ଭାବରେ କାର୍ଯ୍ୟ କରିବ । ଯେତେବେଳେ କୌଣସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବ, ଭାରତର ସବୁ ବଡ଼ ବଡ଼ ପଣ୍ଡିତଙ୍କ ପରାମର୍ଶ କରିବ । ତୁମେ ଯଦି ଏ ପଥ ଅନୁସରଣ ନକର ସର୍ବନାଶରେ ପଡ଼ିବ ।"

ଏହାଥିଲା ବାବରଙ୍କ ଲାଗି ସାବଧାନବାଣୀ । ବାବର ଲେଖିଥିଲେ, ଭାରତୀୟ ସଂସ୍କୃତି ସମସ୍ତ ଧର୍ମ ପ୍ରତି ସମ୍ମାନ ଉପରେ ପର୍ଯ୍ୟବସିତ । ସେ ମଧ୍ୟ କହିଛନ୍ତି ଯେ ସେବା, ତ୍ୟାଗ, ଧର୍ମ ଓ ପ୍ରେମ ହେଉଛି ଏହି ସଂସ୍କୃତିର ମୁଖ୍ୟ ଅଙ୍ଗ ।" [ ସାଇ ସଙ୍ଗଠନର ୫ମ ବିଶ୍ୱ ସମ୍ମିଳନୀରେ ସାଇବାବାଙ୍କ ଦ୍ୱାରା ପ୍ରଦତ୍ତ ଭାଷଣରୁ ଉଦ୍ଧୃତ, "ସନାତନ ସାରଥି" ୩୩ ଭାଗ, ୧୨ଶ ସଂଖ୍ୟା ଡିସେମ୍ବର ୧୯୯୦ - ପୃ: ୩୨୨।୨୩ ] (*)

---

(*) "From the earliest time, Bharat has held forth this path of service. This is not intended for Bharatiyas alone. Once the Moghul emperor Babar wrote a letter to his son, Humayun, when he ascended the throne. "Bharat is a country noted for its adoration of God. It is a magnanimons nation which gave asylum to people of all faiths. Bharatiyas culture is a wonderful one. It has been nourished and cherished by Bharatiyas from times immemorial. No other faith has such an all-encompassing outlook. It is your great fortune that you are becominc the ruler of such a nation. You must be grateful all your life to God for conferring such a blessing on you. You should not impose any restrictions on the religious practices of the Bharatiyas. Do not go against Bharatiya culture. Do your duty (as a ruller). When you want to take any vital decision consult all che great scholars of Bharat. If you do not follow this path, you will come to ruin. "Such was the warning of Babar wrote that Bharatiya culture was based on equal respect for all religions. He also said that service, sacrifice, Dharma and love are the vital limbs of this culture."

(Sanathans Sarathi- Vol. 33 No. 12 December, 1990.)

ପୂର୍ବଙ୍କୁ ଏଇପରି ନିର୍ଦ୍ଦେଶ ଦେଇଥିବା ଲୋକ ପୁଣି କ'ଣ ନିଜେ ମନ୍ଦିର ଧ୍ୱଂସ କରେ ।

ଯାହେଉ ସେଇଦିନୁ ୧୯୪୯ ଡିସେମ୍ବର ୨୨ ତାରିଖ ଯାଏ, ମସ୍‌ଜିଦ ମସ୍‌ଜିଦ ଭଳି ରହିଛି । ସେଠି କୌଣସି ରାମମୂର୍ତ୍ତି ବା ମନ୍ଦିରର ପ୍ରଶ୍ନ ନାହିଁ । ହଠାତ୍ ଡିସେମ୍ବର ୨୩ ତାରିଖ ସକାଳେ, ରାମଙ୍କ ମୂର୍ତ୍ତି ଦେଖାଦିଏ । ମସ୍‌ଜିଦ ମନ୍ଦିର ହୋଇଯାଏ । ସେଇ ୨୩ ତାରିଖ ସକାଳେ । କନେଷ୍ଟବଲ ମାତାପ୍ରସାଦ ଓ ଏସ୍. ଆଇ. ରାମ ଦୁବେ, ଅଯୋଧ୍ୟା ଥାନାରେ ଏଫ୍. ଆଇ. ଆର୍ ଦିଅନ୍ତି ଯେ ପୂର୍ବଦିନ ରାତିରେ ଦଳେ ଲୋକ ମସ୍‌ଜିଦ ଫାଟକ ଭାଙ୍ଗି ଗୋପନରେ ପଶି ସେଠି ରାମମୂର୍ତ୍ତି ଥୋଇଛନ୍ତି, ମସ୍‌ଜିଦର ପବିତ୍ରତା ନଷ୍ଟ କରିଛନ୍ତି । ସେଇଦିନ ସାଢ଼େ ୧୦ଟା ବେଳେ ଫାର୍ଯ୍ୟିଜାବାଦ ଜିଲ୍ଲା ମାଜିଷ୍ଟ୍ରେଟ କେ. କେ. ନାୟାର ମୁଖ୍ୟମନ୍ତ୍ରୀଙ୍କୁ ତାରବାର୍ତ୍ତାରେ ତାହା ଜଣାଇ ଦିଅନ୍ତି । ଏଇଠୁ ହେଲା ସମସ୍ତ ନାଟକର ଆରମ୍ଭ । ଠିକ୍ ସେତିକବେଳେ ଏପରି ଏକ ଘଟଣା ଘଟିବାର କ'ଣ କାରଣ ?

ତା'ର ଉତ୍ତର ଦିଅନ୍ତି, ରାଜୀବ ସାକ୍‌ସେନା, ସେ ଏବେ ପ୍ରଗତିଶୀଳ ଲେଖକ ସଂଘର ସମ୍ପାଦକ । ସେତେବେଳେ ସେ ଥିଲେ ସୋସାଲିଷ୍ଟ ନେତା ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନିର୍ବାଚନ ପ୍ରଚାରକ । ସୋସାଲିଷ୍ଟ ପାର୍ଟି ଗଠନ କରି ନରେନ୍ଦ୍ର ଦେବ, କଂଗ୍ରେସ ସଭ୍ୟପଦ ସହିତ ପାର୍ଲିଆମେଣ୍ଟ ସଭ୍ୟ ପଦରୁ ଇସ୍ତଫା ଦେଇ, ପୁଣି ତାଙ୍କର ସେହି ନିର୍ବାଚନମଣ୍ଡଳୀ ଫର୍ଯ୍ୟଜାବାଦରୁ ସୋସାଲିଷ୍ଟ ପ୍ରାର୍ଥୀ ଭାବେ ନିର୍ବାଚନ ଲଢ଼ନ୍ତି । ତାଙ୍କ ବିରୁଦ୍ଧରେ କଂଗ୍ରେସ ଠିଆ କରେ ବାବା ରାଘବ ଦାସଙ୍କୁ । ସେତେବେଳେ ଉପରୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ନିର୍ଦ୍ଦେଶ ହେଲା କଂଗ୍ରେସ ପ୍ରାର୍ଥୀଙ୍କୁ ଜିତାଇବା ଲାଗି "ସବୁକିଛି" କରିବାକୁ ହେବ । ସେଇ କଥା ମାଜିଷ୍ଟ୍ରେଟ ସ୍ୱୀକାର କରି କହନ୍ତି ଯେ, ସିଏ ମୁଖ୍ୟମନ୍ତ୍ରୀଙ୍କ ଆଦେଶ ପାଳନର ଚେଷ୍ଟା କରିଛନ୍ତି । ଶ୍ରୀ ସାକ୍‌ସେନାଙ୍କ ଭାଷାରେ । ଏବଂ ଏହା ଅତି ପରିଷ୍କାର ଯେ ସିଏ, ଅଯୋଧ୍ୟାର ମସ୍‌ଜିଦର "ଗର୍ଭ ଗୃହରେ ରାମମୂର୍ତ୍ତି— ରଖିବାରେ ଷଡ଼ଯନ୍ତ୍ର କରିଛନ୍ତି ଏବଂ ଜିଲ୍ଲା ମାଜିଷ୍ଟ୍ରେଟ ହିସାବରେ ମସ୍‌ଜିଦକୁ ମୁସଲମାନମାନଙ୍କ ପହଞ୍ଚିବାର ବାହାରେ ରଖିବାରେ ସମସ୍ତ କାର୍ଯ୍ୟକାରୀ ପଦକ୍ଷେପ ନେଇଛନ୍ତି ।" (ନିଉଏଜ, ୮ ନଭେମ୍ବର ୧୯୯୨)

ତେଣେ ୟୁ. ପି. ଚିଫ୍ ସେକ୍ରେଟେରୀ ଭଗବାନ ସାହି ଓ ଆଇ. ଜି ଲାହିରିଙ୍କ ସେତେବେଳେ ଆଦେଶ ହୋଇଛି ଯେ ମୂର୍ତ୍ତିକୁ ହଟାଇ ଦିଅ,

ତାଙ୍କର ବହୁ ନିରୀହ ଜୀବନ ନଷ୍ଟ ହେବ ବୋଲି ମାଜିଷ୍ଟ୍ରେଟଙ୍କ ତାକୁ ନାସ୍ତି କରି ଦେଇଛନ୍ତି ।

୧୯୪୯ ଡିସେମ୍ବର ୨୯ରେ ମାଜିଷ୍ଟ୍ରେଟଙ୍କ ଅର୍ଡ଼ର ହୋଇଛି ତାଲା ବନ୍ଦକର, ମୁସଲମାନମାନଙ୍କୁ ପ୍ରାର୍ଥନା କରିବାକୁ ଛାଡ଼ନାହିଁ । ପାଖ ଗେଟରୁ ମୂର୍ତ୍ତିକୁ ଦର୍ଶନ କରିବାକୁ ଦିଅ । ଏବେ ମସ୍‌ଜିଦ ମୁସଲମାନମାନଙ୍କ ପହଞ୍ଚର ବାହାରେ ରହିଲା । କଂଗ୍ରେସ ପ୍ରାର୍ଥୀ ଜିତିଲେ । ଏବେ ଆରମ୍ଭ ହେଲା ଓଲଟା ଦିଗରେ ଗାନ୍ଧିଜୀଙ୍କ କଂଗ୍ରେସର ଗତି ।

ସେହି ସମସ୍ୟା ସମାଧାନର ସକଳ ଉଦ୍ୟମ ଉକ୍ତ ମାଜିଷ୍ଟ୍ରେଟଙ୍କଦ୍ୱାରା ପଣ୍ଡ ହୋଇଛି । ତାଙ୍କର ଏକମାତ୍ର ଯୁକ୍ତି, ମୂର୍ତ୍ତିର ଅପସାରଣ ଦ୍ୱାରା ରକ୍ତପାତ ଘଟିବ, ବହୁ ନିରୀହ ଜୀବନ ନଷ୍ଟ ହେବ । ତାର ୪୩ ବର୍ଷ ପରେ, ୧୯୯୨ ବାବ୍ରୀ ମସ୍‌ଜିଦ ଧ୍ୱଂସବେଳକୁ ଠିକ୍ ସେଇ ଯୁକ୍ତି ଆସେ । ମସ୍‌ଜିଦର ରକ୍ଷା ଲାଗି ବହୁ ପୋଲିସ ଫୋର୍ସ, ଯଥେଷ୍ଟ ଅର୍ଦ୍ଧସାମରିକ ବାହିନୀ ଉପସ୍ଥିତ ଥିଲେ ବି ତାଙ୍କୁ ବ୍ୟବହାର କରାଗଲା ନାହିଁ । ବି· ଜେ· ପି· ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂହ ତାହାହିଁ କହିଲେ, ମସ୍‌ଜିଦ ରକ୍ଷା କରିବାକୁ ଗଲେ ବହୁ ନିରୀହ ଜୀବନ ନଷ୍ଟ ହେବ । ଅଥଚ ସେଇଦିନୁ ଦେଶରେ କେତେ ଦଙ୍ଗା ସୃଷ୍ଟି ହୋଇ କେତେଗୁଣ ନିରୀହ ଜୀବନ ନଷ୍ଟ ନ ହୋଇଛି ?

ସେତେବେଳେ କଂଗ୍ରେସ ନେତାଙ୍କର ଏହି ମାନସିକତାକୁ ଫୈଜାବାଦ ଜିଲ୍ଲା କମିଟି ବରଦାସ୍ତ କରିପାରି ନାହିଁ । ସମ୍ପାଦକ ବାବା ଅକ୍ଷୟ ବ୍ରହ୍ମଚାରୀ ତା'ର ପ୍ରତିବାଦରେ, ସାଂପ୍ରଦାୟିକତା ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଛନ୍ତି, ଅନଶନରେ ବସିଛନ୍ତି । ଶେଷରେ ତାଙ୍କର ଆଶ୍ରମ ଲୁଟ ହୋଇଛି, ତାକୁ ପୋଡ଼ି ଜାଳି ଦିଆଯାଇଛି, ତାଙ୍କୁ ସେଠାରୁ ଭଗେଇ ଦିଆଯାଇଛି । ସେ ସେଠାରୁ ପଳାଇ ଯାଇ ଲକ୍ଷ୍ନୌର ଚନାହଟା ଗାଁରେ 'ସତ୍ୟାଶ୍ରମ' ଗଢ଼ି ସାଂପ୍ରଦାୟିକ ସଦ୍‌ଭାବ ଓ ଗାନ୍ଧୀବାଣୀ ପ୍ରଚାରରେ ଲାଗିଛନ୍ତି ।

ଅବସ୍ଥା ଖରାପ ଆଡ଼କୁ ଗତି କରିବାରୁ ସର୍ଦ୍ଦାର ପଟେଲଙ୍କ ପରାମର୍ଶରେ ମସ୍‌ଜିଦରେ ତାଲା ପଡ଼ିଛି । ତା' ଭିତରେ ରାମ ମୂର୍ତ୍ତି ସେମିତି ବନ୍ଦ ରହିଲା । ସେହି ସ୍ଥିତାବସ୍ଥା ରହିବା ଭିତରେ ହିନ୍ଦୁ ଓ ମୁସଲମାନଙ୍କ ଦୁଇ ପକ୍ଷରୁ ବହୁ ମକଦ୍ଦମା ଦାଏର ହେଲା । ସେତେବେଳକୁ କଂଗ୍ରେସ ଦୋଘାଇରେ ପଡ଼ିଲାଣି । ତାହା ନିଜର ମୌଳିକ ମତକୁ ବଳି ଦେଇ ସମସ୍ୟାର ସମାଧାନ ଚାହୁଁ ନ ଥିଲା ।

ତା ଭଲକରି ଜାଣେ, ରାମମୂର୍ତ୍ତି ସ୍ଥାପନ ଅନ୍ୟାୟ, ଆଇନ ବିରୁଦ୍ଧ, ହିନ୍ଦୁ ସାଂପ୍ରଦାୟିକତା ଦିଗରୁ ଉଦ୍ଦିଷ୍ଟ—ତାହା ଧର୍ମନିରପେକ୍ଷତା ନୀତିର ମୂଳରେ କୁଠାରାଘାତ କରେ ।

ତା'ପରେ, ୧୯୫୨ ରେ ଯେତେବେଳେ ଭାରତ ସାଧାରଣତନ୍ତ୍ରର ପ୍ରଥମ ନିର୍ବାଚନ ହୁଏ, ସେହି ମାଜିଷ୍ଟ୍ରେଟ ସେତେବେଳର ଖୋଦ ନାୟାର ସାହେବ ଏବେ ସେଇଠି (ହିନ୍ଦୁ ସାଂପ୍ରଦାୟିକ ଦଳ, ବି. ଜେ. ପି.ର ପିତା) ଜନସଂଘର ପ୍ରାର୍ଥୀ ଭାବେ ଦେଖା ଦେଲେ । ପୂର୍ବରୁ ସେ ବୁଣିଥିବା ସାଂପ୍ରଦାୟିକତାର ବୀଜ ଫଳପ୍ରଦ ହେଲା । ସେ ଜନସଂଘ ସଭ୍ୟଭାବେ ନିର୍ବାଚିତ ହେଲେ ।

ସ୍ଥିତିରେ ଗେଟ ଭାଙ୍ଗି ମୂର୍ତ୍ତି ସ୍ଥାପନକୁ ଆର. ଏସ୍. ଏସ୍.ର ମୁଖପତ୍ର ଅର୍ଗାନାଇଜର ମଧ୍ୟ ଅସ୍ୱୀକାର କରେ ନାହିଁ । ତାହା ୨୯ ମାର୍ଚ୍ଚ ୧୯୮୭ରେ, ତା'ର ନିଜ ଭାଷାରେ କହେ, ସେଦିନର ଐତିହାସିକ ସକାଳେ ରାମଚନ୍ଦ୍ର ଓ ସୀତା ଦେବୀଙ୍କ ମୂର୍ତ୍ତି ରହସ୍ୟଜନକ ଭାବେ (Miraculously) ଜନ୍ମ ସ୍ଥାନରେ ଆବିର୍ଭୂତ ହେଲା ।

ସେ ଦିନର ସେହି ଷଡ଼ଯନ୍ତ୍ର ସମସ୍ତଙ୍କୁ ଚକିତ ଓ ସ୍ତମ୍ଭିତ କରି ଦେଇଛି । ତା'ର ଧିନ ଦିନଠି ନେହରୁ ଘୋର ଉଦ୍‌ବେଗ ପ୍ରକାଶ କରି କହନ୍ତି—ତାହା ଏକ ବିପଜ୍ଜନକ ଦୃଷ୍ଟାନ୍ତ । ତା'ହା ପରିଣାମ ଖରାପ ହେବ ବୋଲି ମୁଖ୍ୟମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କୁ ଜଣାନ୍ତି । ସେ ଚିଠିରେ ରାଜ୍ୟପାଳ ରାଜାଜୀଙ୍କୁ ମଧ୍ୟ ଲେଖନ୍ତି— "ଆକ୍ରମଣାତ୍ମକ (ଦା ଜବରଦସ୍ତି) ମନୋଭାବ ପ୍ରଣୋଦିତ କୌଣସି ଏକତରଫା କାର୍ଯ୍ୟକୁ ବରଦାସ୍ତ କରାଯାଇ ନପାରେ ।" ତେଣେ କାଲୁଆସ୍ଥ ଟରେ ନେହରୁ ନିଜେ ଅଯୋଧ୍ୟା ଆସିବେ ବୋଲି ଲେଖନ୍ତି । ୯ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀପନ୍ଥ ନେହେରୁଙ୍କୁ ପ୍ରତିଶ୍ରୁତି ଦିଅନ୍ତି ଯେ ତାଙ୍କର ଆସିବାର କୌଣସି ଆବଶ୍ୟକତା ନାହିଁ । ଯେତୁ ରାମମୂର୍ତ୍ତିକୁ ହଟାଇ ଦେବାର ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଇତିମଧ୍ୟରେ ବହୁ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଆସିଛନ୍ତି, ଯାଇଛନ୍ତି କିନ୍ତୁ ସ୍ଥିତିରେ କବାଟ ଭାଙ୍ଗି ଥୁଆ ହୋଇଥିବା ମୂର୍ତ୍ତି କେବଳ ହଟିଯାଇ ନାହିଁ, ଓଲଟି ବାବ୍ରୀ ମସ୍‌ଜିଦ୍ ଧ୍ୱଂସ ପାଇଛି । ତାହା ଏକ ଏକ ସାଂପ୍ରଦାୟିକ ଆଗ୍ନେୟଗିରି ହେବାରେ ନେହେରୁଙ୍କ ଭବିଷ୍ୟତବାଣୀ ପ୍ରତିପାଦିତ ହୋଇଛି ।

ଏହା ଦ୍ୱାରା ଧର୍ମ ନିରପେକ୍ଷତାକୁ ବଳି ଦିଆଯାଏ । ତା'ର ପ୍ରତିକାର ଦିଗରେ ଯଥାର୍ଥ ପଦକ୍ଷେପ ହେଲା ହିନ୍ଦୁ ସାଂପ୍ରଦାୟିକତାକୁ ପ୍ରତିହତ କରିବା ।

ଆଜି ଗାନ୍ଧିଜୀ ନାହାନ୍ତି ସିଏ ଦୃଢ଼ତାର ସହ ନିର୍ଭୀକ ଭାବେ କହିବେ, "ମୂର୍ତ୍ତିର କୌଣସି ମୂଲ୍ୟ ନାହିଁ, ଯଦି ତାହା ଯଥାର୍ଥ ଭକ୍ତମାନଙ୍କ ଦ୍ୱାରା ଏକ ପବିତ୍ର ସ୍ଥାନରେ ଯଥାଯୋଗ୍ୟ ଭାବରେ ପ୍ରତିଷ୍ଠିତ ନହୁଏ । ବଳପୂର୍ବକ ମସ୍‌ଜିଦ ଦଖଲ, ହିନ୍ଦୁ ଓ ଶିଖ ମତବାଦକୁ କଳଙ୍କିତ କରେ । ହିନ୍ଦୁମାନଙ୍କର କର୍ତ୍ତବ୍ୟ ହେଉଛି, ମସ୍‌ଜିଦରୁ ମୂର୍ତ୍ତିକୁ ହଟାଇ ଦେବା ଏବଂ କ୍ଷତିର ମରାମତି କରିବା ।.........
( ପ୍ରାର୍ଥନା ସଭା—ଦିଲ୍ଲୀ, ଡିସେମ୍ବର ୩୦, ୧୯୪୭)*

ଗାନ୍ଧିଜୀଙ୍କ ସେହି ବାଣୀକୁ ଉପେକ୍ଷା କରିବାର ଫଳ ଆଜି ଭାରତ ଭୋଗ କରେ । ୧୯୪୯, ଅଯୋଧ୍ୟାର ନେଡ଼ିଗୁଡ଼ ଏବେ କହୁଣୀକୁ ବୋହି ଗଲଣି । ତାହା ଆଜି ଆଉ ଅଯୋଧ୍ୟାରେ ସୀମିତ ନୁହେଁ, ତାହା ଭାରତ ବ୍ୟାପୀ । ତାହା ସ୍ୱତଃସ୍ଫୂର୍ତ୍ତ ନୁହେଁ, ସଂଗଠିତ, ଜନିତ ନୁହେଁ ଆହୂତ । ସାଂପ୍ରଦାୟିକତା ଲଜ୍ଜାର ବିଷୟ ନୁହେଁ, ଗର୍ବର କଥା । ତାହା ସାମୟିକ ଦଙ୍ଗାରେ ସୀମାବଦ୍ଧ ନୁହେଁ, ତା'ର ଦାବୀ ରାଷ୍ଟ୍ରର ସ୍ଥାୟୀ ପରିବର୍ତ୍ତନ । ହିନ୍ଦୁତ୍ୱର ଦ୍ୱାହି ଦେଇ ତାହା ଭାରତର ଉଜ୍ଜ୍ୱଳ ଭବିଷ୍ୟତକୁ ବାନ୍ଧି ଦେବାର ଚେଷ୍ଟା କରେ । ବ୍ରାହ୍ମଣ୍ୟବାଦର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଚିରଦିନ ପାଇଁ ।

୧୯୪୯ର ବନ୍ଦ ତାଲା ଏବେ ୩୭ବର୍ଷ ପରେ ୧୯୮୬ରେ ଖୋଲି ହେଲା । ଶେଷରେ ଅଥା ରାମମୂର୍ତ୍ତିର ଦର୍ଶନର ଦ୍ୱାର ଖୋଲିଗଲା । ବାବର ମସ୍‌ଜିଦ ମନ୍ଦିରର ରୂପ ନେଲା । ଅଥଚ ସେଇ ଉତ୍ତର ପ୍ରଦେଶ ସରକାର, ତାଙ୍କର ୧୯୫୦ ମକଦ୍ଦମା ଅର୍ଜିରେ କହିଥିଲେ ଯେ ବାବ୍ରୀ ମସ୍‌ଜିଦ ବହୁକାଳ ଧରି ମୁସଲମାନ-ମାନଙ୍କ ପ୍ରାର୍ଥନା ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଛି; ଶ୍ରୀ ରାମଚନ୍ଦ୍ର ଜୀଙ୍କ ମନ୍ଦିର ଭାବେ ବ୍ୟବହୃତ ହୋଇ ନାହିଁ । ସେଠି ୨୨ ତାରିଖ ଡିସେମ୍ବର ୧୯୪୯ ରାତ୍ରିରେ ରାମଚନ୍ଦ୍ରଜୀଙ୍କ ମୂର୍ତ୍ତି ଗୋପନରେ ଥିଆଯାଇଛି । ଏବେକିନ୍ତୁ ହଠାତ୍ ଅନ୍ୟାୟ ନ୍ୟାୟ ରୂପରେ, ଅସାଧୁତା ସାଧୁତା ଭାବେ ଏବଂ ମିଥ୍ୟା ସତ୍ୟର ଆବରଣରେ ଆତ୍ମ ପ୍ରକାଶ କଲା । ସେଠୁ ଯାହାକୁ ହଟାଇବାର କଥା, ତା' ଏବେ ପୂଜିତ ହେବାରେ

---

(*) A idol has no value unless it is duly installed in a consecrete place by duly qualified devotees. Forcible possession of a Mosque and disgrace Hinduism and Sikhism. It is duty of Hindus to remove the idol from the Mosque and repair the damage.

( Delhi, December 30, 1947 at Prayer meeting)

ଲାଗିଲା । ତା' ଘଟିଲା, ରାଜୀବ ଗାନ୍ଧୀଙ୍କ ପ୍ରଧାନ ମନ୍ତ୍ରୀତ୍ୱ ଅମଳରେ, ତାଙ୍କର କାରସାଦ ଫଳରେ, ହିନ୍ଦୁ ମନୋଭାବକୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ । କିପରି କାହିଁକି ?

ଏହା ହେଲା ଶେଷ ରାଜନୀତି । ଏତିକବେଳେ ସାହାବାନୁ ମକଦ୍ଦମାରେ ସୁପ୍ରିମକୋର୍ଟ ନିଷ୍ପତ୍ତି ଦେଲା ଯେ ସିଭିଲକୋଡ଼ ସମସ୍ତଙ୍କ ପ୍ରତି ଲାଗୁ ହେବ । ତାହା ମୁସଲମାନଙ୍କ ପ୍ରତି ମଧ୍ୟ ପ୍ରଯୋଜ୍ୟ । ତଦ୍ଦ୍ୱାରା ମୁସଲମାନ ନାରୀମାନେ ପୁରୁଷଙ୍କ ମନମୁଖୀ କାରବାର ଓ ମୁଲ୍ଲା ମୌଲବୀଙ୍କ ଆଧିପତ୍ୟରୁ କେତେ ପରିମାଣରେ ମୁକ୍ତ ହେଲେ । ଏବେ ଛାଡ଼ପତ୍ର ଦେଲେ ଉଚିତ କାରଣ ଦର୍ଶାଇ ହେବ; ଭରଣ ପୋଷଣ ଦେବାକୁ ପଡ଼ିବ । ଲୋକ, ତଲାକ ତଲାକ କହି ସ୍ତ୍ରୀକୁ ଆଉ ଫିଙ୍ଗିଦେଇ ହେବ ନାହିଁ । ଏହାକୁ ମୁସଲମାନ ଧର୍ମ ଉପରେ ହସ୍ତକ୍ଷେପ କହି ମୁସଲମାନ ଧର୍ମାନ୍ଧ, ସାଂପ୍ରଦାୟିକତାବାଦୀମାନେ ବିରାଟ ଆନ୍ଦୋଳନ ଆରମ୍ଭ କରିଦେଲେ । ଧର୍ମ ନାମରେ ବ୍ୟାପକ ସଭା ସମିତିମାନ ହେଲା । କଂଗ୍ରେସ ଭାବିଲା ତା ହାତରୁ ମୁସଲମାନ ଭୋଟ ଖସିଗଲା କି ? ସୁପ୍ରିମକୋର୍ଟର ସେହି ଯେଉଁ ବିଗ୍ଭରକୁ ତାହା ପୂର୍ବରୁ ପାର୍ଲାମେଣ୍ଟରେ ସମର୍ଥନ ଦେଇଥିଲା, ଏବେ ଓଲଟା ବିଲ୍ ଆଣି ସେହି ସୁପ୍ରିମକୋର୍ଟ ନିଷ୍ପତ୍ତିକୁ ରଦ୍ଦ କରିଦେଲା । ଅର୍ଥାତ୍ ମୁସଲମାନ ସାଂପ୍ରଦାୟିକତା ପାଖରେ ଆତ୍ମସମର୍ପଣ କଲା ।

ଏଥିରେ ହିନ୍ଦୁ ସାଂପ୍ରଦାୟିକତା କ୍ଷେପି ଉଠିଲା । ଅଭିଯୋଗ ହେଲା ଯେ ସଂଖ୍ୟାଲଘୁଙ୍କୁ ତୁଷ୍ଟ କରିବା ଲାଗି ବିଶେଷ, ସ୍ୱତନ୍ତ୍ର ସୁବିଧା ଦିଆଯାଉଛି । ଆଇନର ପାତର ଅନ୍ତର ବ୍ୟବହାର ହେଉଛି । ସିଭିଲ କୋଡ଼ ସାରା ଦେଶ ପାଇଁ ଗୋଟାଏ ହେବା ଉଚିତ ଇତ୍ୟାଦି । ଏଇ ପ୍ରଚାର ଓ ଆନ୍ଦୋଳନ ଦ୍ୱାରା ହିନ୍ଦୁ ସାଂପ୍ରଦାୟିକତା କଂଗ୍ରେସର ଭୋଟ କାଟିବାରେ ଲାଗିଲା । ତେଣୁ ଭୋଟ ପାଇଁ ହିନ୍ଦୁ ମନୋଭାବକୁ ତୁଷ୍ଟ କରିବାକୁ ହେବ ତେଣୁ ମସ୍‌ଜିଦ ତାଲା ଫିଟିଲା । କିପରି ତାଲା ଫିଟିବା ସହିତ ନେଣେ ଫାଟିବାକୁ ଆରମ୍ଭ କଲା ଚାପିହୋଇ ରହିଥିବା ପୂର୍ବର ସେହି ଜମାଟ ଘନା ଅସନ୍ତୋଷ ଆଉ ଉତ୍ତେଜନା । ଏହାଦ୍ୱାରା ମସ୍‌ଜିଦ ମନ୍ଦିର ପାଲଟିଲା । ରାମଙ୍କ ଦର୍ଶନ ଲାଗି ମହନ୍ତମାନେ ମସ୍‌ଜିଦରେ ପ୍ରବେଶ କଲେ । ସେହି ତାଲା ଫିଟିବା ଦୃଶ୍ୟ ଟି. ଭି.ରେ ପ୍ରଚାରିତ ହେଲା ।

ପୁଣି ସେତିକବେଳକୁ ଆସେ ବୋଫର୍ସ ଦୁର୍ନୀତି ଅଭିଯୋଗ । ତା' ସାଙ୍ଗକୁ ଆରମ୍ଭ ହୁଏ ମଣ୍ଡଳ ଆନ୍ଦୋଳନ । ଫଳରେ ରାଜୀବ ଗାନ୍ଧୀଙ୍କ ଜନସମର୍ଥନ ହ୍ରାସ ପାଇବାରେ ଲାଗେ । ତା'ର ପ୍ରତିକାର ହେଲା ସଂଖ୍ୟାଧିକ ଲୋକଙ୍କର

ସମର୍ଥନ ଲଭର ଉଦ୍ୟମ, ସେ ସମର୍ଥନ ଲଭର ସହଜ ଉପାୟ ହେଲା ଧର୍ମ । ସେଥିରେ କା'ଣ ଦାବୀ ପୂରଣର ପ୍ରଶ୍ନ ନାହିଁ, ଲୋକଙ୍କର ଅନ୍ଧବିଶ୍ୱାସକୁ ଉତ୍ସାହିତ, ଉତ୍ତେଜିତ କରି ପାରିଲେ ହେଲା । ତା'ର ସୁଯୋଗ ନେବା ଅର୍ଥ ରାଜନୀତିରେ ଧର୍ମକୁ ହତିଆର ରୂପେ ପ୍ରୟୋଗ କରିବା ।

ତାଲା ଖୋଲିବା ପରେ, ଏବେ କଂଗ୍ରେସର ସେ ଦିଗରେ ଦ୍ୱିତୀୟ ପଦକ୍ଷେପ ହେଲା, ସେଠି ରାମ ମନ୍ଦିର ଲାଗି ଶିଳାନ୍ୟାସ, ଭିତ୍ତି ସ୍ଥାପନ । ତାହା ହେଲା ସେଇ ବିବାଦୀୟ ଜମି ଉପରେ, ତାକୁ କଲେ କଂଗ୍ରେସ ନେତା ବୁଟା ସିଂହ; ନଭେମ୍ବର ୯।୧୦, ୧୯୮୯ରେ, ସେତିକିବେଳେ ହାଇକୋର୍ଟ କୌଣସି ସ୍ଥାୟୀ ନିର୍ମାଣ ହେବ ନାହିଁ ବୋଲି (ଅଗଷ୍ଟ ୧୪, ୧୯୮୯) ନିଷେଧାଜ୍ଞା ଜାରି କରିଥିଲା । ଏ ହେଲା ହିନ୍ଦୁଙ୍କୁ ଖୁସି କରିବା ଲାଗି ଶିଳାନ୍ୟାସ, ମୁସଲମାନମାନଙ୍କୁ ତୁଷ୍ଟ କରିବା ପାଇଁ ସେଠି ସ୍ଥାୟୀ ନିର୍ମାଣ ନିଷେଧ । ପୁଣି ଠିକ୍ ସେଇ ନଭେମ୍ବର ମାସରେ ସେଇ ଅଯୋଧ୍ୟା ଫାଇଜାବାଦରୁ ରାଜୀବ ଗାନ୍ଧୀଙ୍କ ନିର୍ବାଚନ ଅଭିଯାନ ଆରମ୍ଭ କରନ୍ତି । ତା' ପୁଣି ରାମ ରାଜ୍ୟ ପ୍ରତିଷ୍ଠାର ଡାକ ଦେଇ । ରାମ ଧର୍ମର ବ୍ୟବହାରରେ କଂଗ୍ରେସର ସେହି କର୍ମ କୌଶଳକୁ ବି. ଜେ. ପି ଓ ସଙ୍ଘ ପରିବାର ଟପିଗଲା । ରାମମନ୍ଦିର ଲାଗି ଇଟା ସଂଗ୍ରହ, ଅର୍ଥ ସଂଗ୍ରହ, ରଥଯାତ୍ରା (ସୋମନାଥରୁ ଅଯୋଧ୍ୟା) ଇତ୍ୟାଦି ଅଭିଯାନଦ୍ୱାରା ତାହା ତାକୁ ହରାଇ ଦେଲା । ତାହା ଅଧିକ ସଂଖ୍ୟାରେ ହିନ୍ଦୁ ଭୋଟରଙ୍କୁ ଟାଣିବାରେ ଲାଗିଲା ।

ହିନ୍ଦୁ ଭୋଟରଙ୍କୁ ନିଜ ପକ୍ଷକୁ ଟାଣିବାରେ କଂଗ୍ରେସ ସେ ଦିଗରେ ଆହୁରି ପାଦେ ଅଗ୍ରସର ହେଲା । ମନ୍ଦିର ନିର୍ମାଣ ସମ୍ପର୍କରେ ଆସିଥିବା ଅନାସ୍ଥା ପ୍ରସ୍ତାବ ଉପରେ ପାର୍ଲିଆମେଣ୍ଟରେ ବି. ଜେ. ପି. ସହିତ ମିଶି ଭି. ପି. ସିଂହଙ୍କ ବିରୁଦ୍ଧରେ ଭୋଟ ଦେଇ ତାଙ୍କ ସରକାରକୁ ଭାଙ୍ଗିଦେଲା । କାରଣ ଭି. ପି. ସିଂହ ଥିଲେ ସାଂପ୍ରଦାୟିକତାବାଦର ଘୋର ବିରୋଧୀ, ସେ ଅଡ୍‌ଭାନୀଙ୍କ ରଥକୁ ଅଯୋଧ୍ୟାରେ ପ୍ରବେଶ କରିବାକୁ ଦେଲେ ନାହିଁ, ସମ୍ବିଧାନର ନିର୍ଦ୍ଦେଶକୁ ସଦା ଜଗି ରହିଥିଲା । ତେଣୁ ବି ଜେ. ପି. ଚାହୁଁ ଥିଲା ସେହି ସରକାରର ପତନ । ତାଙ୍କୁ ଭାଙ୍ଗିବାରେ କଂଗ୍ରେସ ଆଗେଇ ଆସିବାରେ କଂଗ୍ରେସ ଦେଖାଇବାକୁ ଚାହିଁଲା ଯେ ତାହା ହିନ୍ଦୁଙ୍କ ପାଇଁ ବି. ଜେ. ପି ତୁଳନାରେ କୌଣସି ଅଂଶରେ କମ୍ ନୁହେଁ ।

ଏଇ ହେଲା ରାଜନୀତିରେ ଧର୍ମକୁ ଅସ୍ତ୍ର ରୂପେ ପ୍ରୟୋଗ କରିବାର ନଗ୍ନ ଦୃଷ୍ଟାନ୍ତ । ଯଦିଓ ବର୍ତ୍ତମାନର କଂଗ୍ରେସ ଓ ବି. ଜେ. ପି. ଉଭୟ ତାହା କହୁଥାନ୍ତି

ତେବେ ତାଙ୍କ ମଧ୍ୟରେ ଗୁଣାତ୍ମକ ଫରକ ରହିଛି । କଂଗ୍ରେସର ସେହି ନୀତି ହେଲ ସୁବିଧାବାଦୀ ନୀତି । ତାହା କ୍ଷମତାରେ ରହିବା ପାଇଁ, କେତେବେଳେ ହିନ୍ଦୁ ଓ କେତେବେଳେ ମୁସଲମାନମାନଙ୍କୁ ଧରେ, ଆଉ ଧର୍ମନିରପେକ୍ଷ ନୀତିର ପ୍ରଚାର ଓ ପ୍ରୟୋଗ କରେ । ରାଜନୀତିର ଧର୍ମକୁ ଅଲଗା କରିବାର ପ୍ରସ୍ତାବ ଆଣେ । ତାହା ସାଂପ୍ରଦାୟିକ ପାର୍ଟି ନୁହେଁ; କିନ୍ତୁ ବି. ଜେ. ପି. ମୂଳତଃ ହିନ୍ଦୁ ସାଂପ୍ରଦାୟିକ ଦଳ । ତାହାହିଁ ହେଲ ତା'ର ନୀତି, ଭିତ୍ତି ଓ ଲକ୍ଷ୍ୟ । ତା'ଛଡ଼ା ତା'ର ସ୍ଥିତି ନାହିଁ । ଯେତେ ହିନ୍ଦୁ ସାଂପ୍ରଦାୟିକ ଦଳ ଓ ଗୋଷ୍ଠୀ ରହିଛନ୍ତି ସମସ୍ତଙ୍କ ସଙ୍ଗେ ଏକା ପରିବାରଭୁକ୍ତ । ହିନ୍ଦୁ ରାଷ୍ଟ୍ର ପ୍ରତିଷ୍ଠା ତା'ର ଲକ୍ଷ୍ୟ । ଅର୍ଥନୀତି ଦିଗରୁ କଂଗ୍ରେସ ଓ ବି. ଜେ. ପି. ଦୁହେଁ ମୁକ୍ତ ଅର୍ଥନୀତିର ଦୃଢ଼ ସମର୍ଥକ ହେଲେ ମଧ୍ୟ, ତାଙ୍କ ମଧ୍ୟରେ ମୌଳିକ ପାର୍ଥକ୍ୟ ରହିଛି । ହିନ୍ଦୁଙ୍କୁ ସନ୍ତୁଷ୍ଟ କରିବାର ସାଂପ୍ରଦାୟିକତାର ଦଉଡ଼ରେ କଂଗ୍ରେସ କଦାପି ସଂଘ ପରିବାରର ସମକକ୍ଷ ହୋଇପାରିବ ନାହିଁ । ତାହା ହେବାକୁ ଯିବା ଅର୍ଥ ନିଜକୁ ଏକ ହିନ୍ଦୁ ସାଂପ୍ରଦାୟିକ ଦଳରେ ପରିଣତ କରିବା । କିନ୍ତୁ ଏହା ସତ୍ୟ ଯେ, କଂଗ୍ରେସର ସେହି ସୁବିଧାବାଦୀ ନୀତି, ସାଂପ୍ରଦାୟିକତା ଓ ସଂଘ ପରିବାରକୁ କ୍ରମାଗତ ଉତ୍ସାହିତ କରି ଆସିଛି । ଫଳରେ ତାହା ଆଜି ଖୋଦ୍ କଂଗ୍ରେସକୁ ଗ୍ରାସ କରିବାକୁ ଉଦ୍ୟତ ।

ଦେଶକୁ ସାଂପ୍ରଦାୟିକତାର କବଳରୁ ରକ୍ଷା କରିବାକୁ ତାହା ହିନ୍ଦୁ ବା ମୁସଲମାନ, ଯେଉଁପକ୍ଷରୁ ଆସୁପଛେ, ତାକୁ ପ୍ରତିହତ କରିବାକୁ ହେବ । ଏକପକ୍ଷରେ ସାଂପ୍ରଦାୟିକତା ଅନ୍ୟ ପକ୍ଷକୁ ଉତ୍ସାହିତ କରେ । ଦଳ, ଗୋଷ୍ଠୀ ସଂପ୍ରଦାୟ-ବାଦ ନିର୍ବିଶେଷରେ ପ୍ରତ୍ୟେକ କ୍ଷେତ୍ରରେ ତା'ର ମୁକାବିଲା କରିବାକୁ ପଡ଼ିବ ।

ବର୍ତ୍ତମାନର ବି. ଜେ. ପି. ପୂର୍ବର ଜନସଂଘର ରୂପାନ୍ତର, ତା'ର ନୂତନ ସଂସ୍କରଣ । ଆଗେ ଜନସଂଘର ଡାକ ଥିଲା, ଅଖଣ୍ଡ ହିନ୍ଦୁସ୍ଥାନ । ବି. ଜେ. ପି ଚୁପଚାପ ନିଜନିଜରେ ତାକୁ ଛାଡ଼ି ଦେଇଛି । ଦେଖିଲା ତାହା ସମ୍ଭବ ନୁହେଁ, ତଦ୍ୱାରା ଗୋଟାଏ ଦେଶ ପାକିସ୍ଥାନକୁ ସଂପୂର୍ଣ୍ଣ ଲୋପ କରିବାକୁ ହେବ । ପାକିସ୍ଥାନ ଓ ପୂର୍ବ ବଙ୍ଗର ମୁସଲମାନ ଆସି ଯଦି ଭାରତରେ ମିଶି ଯାଆନ୍ତି, ଏଠାରେ ତାଙ୍କର ସଂଖ୍ୟା ଅତି ମାତ୍ରାରେ ବୃଦ୍ଧି ପାଇବ । ତାହା ବି. ଜେ. ପି. ପକ୍ଷରେ ସାଂଘାତିକ ବିପଦ ହେବ ।

ପ୍ରଥମେ ୧୯୮୦ ଆରମ୍ଭରେ ବି. ଜେ. ପି. ନିଜର ପ୍ରକୃତ ହିନ୍ଦୁ ସାଂପ୍ରଦାୟିକତାର ରୂପକୁ ଲୁଚାଇବାକୁ ଚେଷ୍ଟା କରିଛି । ସେତେବେଳର

ବ· ଜେ· ପି· ସଭାପତି ଆଡ଼ଭାନୀ ଜଣାନ୍ତି ଯେ ତାଙ୍କର ନୀତି ଓ ପ୍ରୋଗ୍ରାମ ହେଉଛି, "ପୁରାପୁରି ଦ୍ୱିଧାହୀନ ଭାବେ ଗାନ୍ଧୀବାଦୀ ସମାଜବାଦୀ ଧାରଣା" (Concept of Gandian Socialism···total and unquivocal) । [ଏଇପରି ଢଙ୍ଗେ ନିଜର ଅସଲ ରୂପକୁ ଢାଙ୍କି, ଲୋକଙ୍କୁ ପ୍ରତାରିତ କରିବା ଲାଗି ହିଟଲର ନିଜର ଫାସିଷ୍ଟ ଦଳର ନାମ ରଖିଥିଲା, "ଜାତୀୟ ସମାଜବାଦ" (National Socialism] ପୁଣି ବ· ଜେ· ପି. ଗାନ୍ଧୀବାଦୀ ସମାଜବାଦ ସହିତ, ଜାତୀୟତା, ଜାତୀୟ ଅଖଣ୍ଡତା, ଗଣତନ୍ତ୍ର, ଆସ୍ତିବାଚକ ଧର୍ମନିରପେକ୍ଷତାକୁ ଯୋଗ କଲା (Nationalism, national integration, democracy, positive secularism) ଦେଖାଗଲା, ଏ ସତ୍ତ୍ୱେ ବ· ଜେ. ପି· ଅଗ୍ରଗତି କରିପାରିଲା ନାହିଁ । ଇନ୍ଦିରା ଗାନ୍ଧୀ ବହୁ ସଂଖ୍ୟାରେ ଭୋଟରଙ୍କୁ ଆକୃଷ୍ଟ କଲା ।

ତାଙ୍କର ନିଧନ ପରେ ଯଦିଓ ଅବସ୍ଥାର ପରିବର୍ତ୍ତନ ଘଟିଲା, ତେବେ ବି ରାଜୀବ ଗାନ୍ଧୀ ସହାନୁଭୂତି ଭୋଟରେ ବହୁଦୂର ଆଗେଇ ଗଲେ । ବ· ଜେ· ପି· ତା'ର ସମବାଭାପନ୍ନ ଶିବସେନା ସହିତ ମିଶିଲେ ବି ମହାରାଷ୍ଟ୍ରରେ ମଧ୍ୟ ଆଗେଇ ପାରିଲା ନାହିଁ । ନିର୍ବାଚନରେ ବିପର୍ଯ୍ୟୟ ଯୋଗୁଁ ଏବେ ଚିନ୍ତା ପଡ଼ିଲା କ'ଣ କରିବାକୁ ହେବ ? ଏତିକବେଳେ ଆର· ଏସ· ଏସ· ତା'ର ମୁଖପତ୍ର 'ଅର୍ଗାନାଇଜର' (ଏପ୍ରିଲ ୭) ଦ୍ୱାରା ଜଣାଇ ଦେଲା ଯେ, ବ· ଜେ· ପି:ର ବିପର୍ଯ୍ୟୟର କାରଣ ତା'ର ଆସ୍ତିବାଚକ ଧର୍ମନିରପେକ୍ଷତା ଓ ଗାନ୍ଧୀବାଦୀ ସମାଜବାଦ ଏବଂ ଆର: ଏସ: ଏସ: ସହ ଘନିଷ୍ଠ ସହଯୋଗିତା ସ୍ଥାପନ ହେଉଛି ତା'ର ଏକମାତ୍ର ପ୍ରତିକାର । ଅର୍ଥାତ୍ ସେବୁ ଛାଡ଼ି ଖୋଲାଖୋଲି ହିନ୍ଦୁ ସାଂପ୍ରଦାୟିକତାର ଆହ୍ୱାନ ଦିଅ । ୧୯୮୭ ଅକ୍ଟୋବରରେ ବ: ଜେ: ପି:ର ଜାତୀୟ କାର୍ଯ୍ୟକାରୀ କମିଟି ଗାନ୍ଧୀବାଦୀ ସମାଜବାଦକୁ ଛାଡ଼ିଲା । ତା'ସହିତ 'ଅଖଣ୍ଡ ମାନବତା ବାଦକୁ' ଯୋଗ କଲା । ସେଥି ସହିତ ନାନା ଭାବରେ ମୂଳ ସାଂପ୍ରଦାୟିକତା ଭାବର ପ୍ରଚାର ଚାଲିଲା ।

ଏବେ କଂଗ୍ରେସର ସୁବିଧାବାଦୀ ନୀତି ବ: ଜେ: ପି:କୁ ଚାହିଁଥିବା ସୁଯୋଗ ଯୋଗାଇ ଦେଲା । ୧୯୮୬ ଫେବୃୟାରୀ ୩ରେ, ବାବ୍ରୀ ମସ୍‌ଜିଦ ତାଲା ଖୋଲିଲା । ସେଇ ମାସ ୨୫ରେ ପାର୍ଲିଆମେଣ୍ଟରେ ମୁସଲମାନ ମହିଳା ବିଲ୍ ଆସିଲା । ତା' ପାଖକୁ ମଇ ୯ ତାରିଖରେ ବାଜପେୟୀଙ୍କ ସ୍ଥାନରେ ଆଡ଼ଭାନୀ ସଭାପତି ହେଲେ । ଏବେ ବିଶ୍ୱ ହିନ୍ଦୁ ମହାସଭା, ଆର: ଏସ: ଏସ: ବଜରଙ୍ଗ ଦଳ ସହିତ ବ:ଜେ:ପି: ସାଂପ୍ରଦାୟିକ ପ୍ରଚାର ଅଧିକ ତୀବ୍ର ଆକାର ଧାରଣ କଲା । ହିନ୍ଦୁ ଭୋଟରଙ୍କ ସମର୍ଥନ ଆଶାରେ କଂଗ୍ରେସ ଯେତେବେଳେ ୧୯୮୯ ନଭେମ୍ବର ୯।୧୦ରେ ରାମ

ମନ୍ଦିରର ଶିଳାନ୍ୟାସ କଲେ, ଠିକ୍ ସେଇ ଦିନ (୯-୧୧-୧୯୮୯) କୁମ୍ଭ ମେଳାରେ ହିନ୍ଦୁ ସାଂପ୍ରଦାୟିକ ଦଳ, ଶକ୍ତି ଓ କେତେକ ବ୍ୟକ୍ତି ବିଶେଷ ଡାକ ଦେଲେ ଯେ, ସେଠି ମସ୍‌ଜିଦକୁ ଭାଙ୍ଗି ମନ୍ଦିର ନିର୍ମାଣ କରିବାକୁ ହେବ। ସେ ଦିଗରେ ଆବଶ୍ୟକୀୟ ପ୍ରଚୁର ଆନ୍ଦୋଳନ ଓ ସଙ୍ଗଠନ ଆରମ୍ଭ ହୋଇଗଲା। ଠିକ୍ ତା'ର ବର୍ଷକଠି ୧୯୯୦ ଅକ୍ଟୋବର ୩୦ରେ ବିଶ୍ୱ ହିନ୍ଦୁ ପରିଷଦର ଲୋକେ ବହୁ ସଂଖ୍ୟାରେ ମସ୍‌ଜିଦ ଭାଙ୍ଗିବାର ଚେଷ୍ଟାରେ ଲାଗିଲେ। ନଭେମ୍ବର ୨ ତାରିଖରେ ତା'ର ବାହାର ପାଚେରୀର ଗୋଟାଏ ଅଂଶ ଭାଙ୍ଗିଦେଲେ। ତଦ୍ୱାରା ତେଣେ ହାଇକୋର୍ଟ ଦେଇଥିବା ଆଦେଶ ସ୍ଥିତାବସ୍ଥା ରକ୍ଷାକୁ ମଧ୍ୟ ଭଙ୍ଗ କରାଗଲା। ଅନ୍ୟ ମଧ୍ୟ ଧର୍ମସ୍ଥାନକୁ ଭାଙ୍ଗିବା ଦ୍ୱାରା ମୂଳ ସମ୍ବିଧାନକୁ ଲଙ୍ଘନ କରାଗଲା। ଏହା ସତ୍ତ୍ୱେ କଂଗ୍ରେସ ସରକାର ନୀରବଦ୍ରଷ୍ଟା ହୋଇ ରହିଲା— କିଛି ପଦକ୍ଷେପ ନେଲା ନାହିଁ, ତାକୁ (ଆଇନ ଓ ସମ୍ବିଧାନକୁ) ରକ୍ଷା କରିବାକୁ ଗଲେ କାଳେ ହିନ୍ଦୁ ଭୋଟରି ବିମୁଖ ହୋଇଯିବେ ତାହାହିଁ ଥିଲା ତା'ର ବିଚାର୍ଯ୍ୟ ବିଷୟ। କଂଗ୍ରେସର ସେହି କାର୍ଯ୍ୟ ସାଂପ୍ରଦାୟିକତାକୁ ଅଧିକ ପ୍ରେରଣା ଯୋଗାଇ ଦେଲା। ଅନ୍ୟ ଦିଗରୁ ଦେଖିଲେ ହିନ୍ଦୁ ଭୋଟରଙ୍କୁ ପାଇବା ଦିଗରେ ତାହା ଥିଲା କଂଗ୍ରେସ ଓ ବି: ଜେ: ପି: ମଧ୍ୟରେ ଏକ ପ୍ରତିଦ୍ୱନ୍ଦ୍ୱିତା।

ଏବେ ସଂଘ ପରିବାରର ପ୍ରଚାର ହେଲା, ମୁସଲମାନମାନଙ୍କୁ ତୁଷ୍ଟ କରା-ଯାଉଛି, ହିନ୍ଦୁଙ୍କ ପ୍ରତି ଅନ୍ୟାୟ ହେଉଛି। କାଶ୍ମୀର ଲାଗି ୩୭୦ ଧାରା ଉଠାଅ, ସମସ୍ତେ ହିନ୍ଦୁ ସଂସ୍କୃତି ଗ୍ରହଣ କରିବେ। ହିନ୍ଦୁ ସ୍ୱାର୍ଥ ହିଁ ଜାତୀୟ ସ୍ୱାର୍ଥ। ଗାନ୍ଧିଜୀ ଜାତିର ଜନକ ନୁହନ୍ତି। ଭାରତୀୟକରଣ ( ହିନ୍ଦୁକରଣ ) କରିବାକୁ ହେବ ଇତ୍ୟାଦି ଇତ୍ୟାଦି। ବି.ଜେ.ପି ନୀତିଗତ ଭାବେ ୧୯୮୯ ଜୁନ ୧୧ ରେ ରାମ ଜନ୍ମଭୂମି ପ୍ରସ୍ତାବ ଗ୍ରହଣ କଲା। ଆଡ୍‌ଭାନୀ ଘୋଷଣା କଲେ, 'ମୁଁ ନିଶ୍ଚିତ ଯେ, ତାହା ଭୋଟରେ ପରିଣତ ହେବ। (I am swre it will tromslate in to vote) ବାସ୍ତବିକ ଭୋଟ ଯୁଦ୍ଧରେ ବି:ଜେ:ପି ରାମଙ୍କୁ ଅମୋଘ ଅସ୍ତ୍ର ଭାବେ ପ୍ରୟୋଗ କରିଛି।

ଅଗଷ୍ଟ ମାସ ଶେଷକୁ ଦିଲ୍ଲୀରେ ଆର୍: ଏସ୍: ଏସ୍ ନେତାମାନେ ବସି ଇସବ ଦେଇଛନ୍ତି, ଅଯୋଧ୍ୟା ସମ୍ପର୍କରେ କଠୋର ନୀତି ଗ୍ରହଣ କର। ସେପ୍‌ଟେ-ମ୍ବର ୧୬ରେ ଆରମ୍ଭ ହୋଇଛି ଆଡ୍‌ଭାନୀଙ୍କ ରଥଯାତ୍ରା— ସୋମନାଥରୁ ଅଯୋଧ୍ୟାକୁ। ରାମ ଭାବେ ଧନୁ ହସ୍ତରେ ନିର୍ବାଚନ ସଙ୍କେତ ଲଗାଇ ରାବଣ ସଂହାରର ଇଙ୍ଗିତ ଦେଇ ଚାଲିଛି ଆଡ୍‌ଭାନୀଙ୍କ ରଥ— ସାଂପ୍ରଦାୟିକ ବିଦ୍ୱେଷର ମଞ୍ଜି ବୁଣି ବୁଣି। ତା' ପଛେ ପଛେ ଜଳି ଉଠିଛି ବ୍ୟାପକ ହିଂସାକାଣ୍ଡ—

ଜଳା ପୋଡ଼ା, ଦଙ୍ଗା, ସଂଘର୍ଷର କଥା । ବ: ଜେ: ପି:ର ଉଦ୍ଦେଶ୍ୟ ପୂରଣ ହୋଇଛି ।

ଏହା ପରେ ସାଂପ୍ରଦାୟିକ ଦଙ୍ଗା ଭୋଟ ସଂଗ୍ରହର ଗୋଟାଏ ପ୍ରଧାନ ଅସ୍ତ୍ର ହୋଇଛି । ଥରେ ଲୋକଙ୍କୁ ସାଂପ୍ରଦାୟିକଭାବେ ବିଭକ୍ତ କରିଦେଲେ ନିଶ୍ଚିତ ସେମାନେ ଆପେ ଆପେ ସାଂପ୍ରଦାୟିକ ଦଳ ଓ ନେତାଙ୍କ ପାଖକୁ ଧାଇଁବେ । କ୍ଷମତା ଦଖଲ ଦିଗରେ ତାହା ହିଁ ହୋଇଛି ବି:ଜେ:ପି ଓ ସଂଘ ପରିବାରର ମୁଖ୍ୟ କର୍ମ କୌଶଳ । ଦଙ୍ଗା ଘଟିଲେ ସମସ୍ତେ କହନ୍ତି ତାହା ଅସାମାଜିକ ଲୋକ, ଦୁର୍ବୃତ୍ତି ଗୁଣ୍ଡାମାନଙ୍କର କାର୍ଯ୍ୟ । ଗାନ୍ଧିଜୀଙ୍କ ଭାଷାରେ, ଆମର ଦୋଷ ଦୋହଡ଼ାଇବା ଲାଗି ଆମେ କହୁଛୁ ଗୁଣ୍ଡାମାନେ ଦାୟୀ, ଏପରି ମନୋଭାବକୁ ମୁଁ ଆଦୌ ପସନ୍ଦ କରେ ନାହିଁ । ଆମର ମନୋଭାବ ଯୋଗୁଁ ହିଁ ଆମେ ଗୁଣ୍ଡାମାନଙ୍କୁ ଜନ୍ମ ଦେଇଛୁ ଓ ତାଙ୍କୁ ସ୍ୱୀକୃତ କରୁ" (ନଭେମ୍ବର ୧୭, ୧୯୪୭, ହରିଜନ) କିନ୍ତୁ ସେହି ଗୁଣ୍ଡାମାନେ କିଏ ? "ସାଂପ୍ରଦାୟିକ ହିଂସାର ତାଣ୍ଡବ ଯେଉଁମାନେ ସୃଷ୍ଟି କରୁଛନ୍ତି ସେମାନେ ଗୁଣ୍ଡା ନୁହନ୍ତି ? ସେମାନେ ଗୁଣ୍ଡାରେ ପରିଣତ ହୋଇଛନ୍ତି । ସେମାନଙ୍କ ପଛରେ ଯଦି ଆମର ସହାନୁଭୂତି ଓ ପରୋକ୍ଷ ସମର୍ଥନ ନ ଥାନ୍ତା, ତେବେ ସେମାନେ କୌଣସି ଦୌରାତ୍ମ୍ୟ କରି ପାରନ୍ତେ ନାହିଁ । ଗତ ବର୍ଷ ଧରି ସାଂପ୍ରଦାୟିକ ଅରାଜକତାର ସୁଯୋଗ ଯୋଗୁଁ ଗୁଣ୍ଡାମାନେ ସମାଜରେ ସମ୍ମାନିତ ବ୍ୟକ୍ତିର ମର୍ଯ୍ୟାଦା ଲାଭ କରିଛନ୍ତି ।...... ଏବେ ସମୟ ଆସିଛି ସମାଜର ଶାନ୍ତିକାମୀ ଲୋକେ ଦୃଢ଼ତାର ସହ ଆଗେଇ ଆସି ସାମାଜିକ ଜୀବନରେ ଗୁଣ୍ଡମାନଙ୍କୁ କବଳିତ କରନ୍ତୁ ।

"ଦୁଷ୍ଟ ଖଳ ଶକ୍ତି ସବୁ ମଙ୍ଗଳପୁଷ୍ଟ ଗଛଭଳି । ସେମାନେ ଦୁର୍ବୁଦ୍ଧି ସମ୍ପନ୍ନ ଶକ୍ତିଙ୍କର ବୃନ୍ତପାଖେ ଚେର ଥାଆନ୍ତି, ଶୁଭବୁଦ୍ଧି ସମ୍ପନ୍ନ ଲୋକେ ତାଙ୍କୁ ସମର୍ଥନ ନ କଲେ, ସେମାନେ କ୍ରମେ କ୍ରମେ ନିସ୍ତେଜ ହୋଇ ଲୋପ ପାଇ-ଯିବେ, ସମାଜବିରୋଧୀ ଶକ୍ତିମାନେ ହୁଏତ ମଥା ଉଠାଇ ଦଦଲାଇ ନ ପାରନ୍ତି, ସେମାନେ ଯଦି ଥରେ ଦେଖନ୍ତି ଯେ ସଦ୍‌ବୁଦ୍ଧି ଶାନ୍ତିକାମୀ ଶକ୍ତି ସବୁ ଦୃଢ଼ଭାବେ ଦଣ୍ଡାୟମାନ, ତାହା ହେଲେ ସେମାନେ ପଛଘୁଞ୍ଚା ଦେବେ"...... (ହରିଜନ, ସେପ୍‌ଟେମ୍ବର ୧୪, ୧୯୦୭)

ଗୁଣ୍ଡାମାନେ ଆକାଶରୁ ପଡ଼ନ୍ତି ନାହିଁ ବା ସେମାନେ ଭୂତପ୍ରେତଙ୍କ ଭଳି ଭୂଇଁ ଫୁଟାଇ ବାହାରନ୍ତି ନାହିଁ । ସାମାଜିକ ଅବକ୍ଷୟର ଭିତରୁ ସେମାନଙ୍କର ଜନ୍ମ । ତାଙ୍କର ସ୍ଥିତି ଲାଗି ଆମ୍ଭେମାନେ ଦାୟୀ, ଅର୍ଥାତ୍ ଆମ ସମାଜମାନଙ୍କର

ଓ ରାଜନୀତର ସର୍ବାଙ୍ଗରେ ଯେଉଁ ଦୁର୍ଗନ୍ଧ ଦେଖା ଦେଇଛି, ତା'ର ବହିର୍ପ୍ରକାଶ ହେଉଛି ସାଂପ୍ରଦାୟିକ ଗୁଣ୍ଡାର ଦୌରାତ୍ମ୍ୟ ।

(ହରିଜନ, ୭ ସେପ୍ଟେମ୍ବର ୧୯୪୮)

ସେହି ସାଂପ୍ରଦାୟିକଗତ ଦଙ୍ଗା ଯେତେ ନିନ୍ଦନୀୟ ହେଲେ ବି, ଭୋଟ ଲାଗି ଫଳପ୍ରଦ । ୧୯୮୪ରେ ଯେଉଁଠି ବି. ଜେ. ପି. ମାତ୍ର ୨ଟି ଲୋକସଭା ଆସନ ଲାଭ କରିଥିଲା, ୧୯୮୯ ଭୋଟରେ ତାହା ୮୮ଟି ବୃଦ୍ଧି ପାଇଲା ଏବଂ ୧୯୯୧ରେ ତାହା ୧୧୯ରେ ପହଞ୍ଚିଲା । ବି: ଜେ: ପି: ପାର୍ଲିଆମେଣ୍ଟରେ ମୁଖ୍ୟ ବିରୋଧୀ ଦଳ ହେବା ସହିତ ତେଣେ ଚାରୋଟି ରାଜ୍ୟରେ ସରକାର ଗଠନ କରିବାରେ ସମର୍ଥ ହେଲା । ଏବେ ଆରମ୍ଭ ହେଲା ତା'ର ଦ୍ୱିତୀୟ ପର୍ଯ୍ୟାୟ । ଲକ୍ଷ୍ୟ ହେଲା କେନ୍ଦ୍ରରେ କ୍ଷମତା ଦଖଲ ଓ ଭାରତରେ ହିନ୍ଦୁ ରାଷ୍ଟ୍ରର ଗଠନ । ତେଣୁ ସେ ଦିଗରେ ଆବଶ୍ୟକୀୟ ପ୍ରସ୍ତୁତି । ଯେଉଁ ସାଂପ୍ରଦାୟିକତାର ପ୍ରସାର ଯୋଗୁଁ ବି: ଜେ: ପି:ର ସଫଳତା, ସେହି ସଫଳତାକୁ ଉତ୍ତରୋତ୍ତର ବୃଦ୍ଧି ଓ ସୁନିଶ୍ଚିତ କରିବାକୁ ହେଲେ ସେହି ସାଂପ୍ରଦାୟିକତାର ସ୍ରୋତକୁ ଅଧିକ ତୀବ୍ର, ପ୍ରଖର ଓ ପ୍ରସାରିତ କରିବାକୁ ହେବ । ସେହି ରାମ-ବିଶ୍ୱାସକୁ ଅଧିକ ଜୋରରେ ବ୍ୟବହାର କରିବାକୁ ପଡ଼ିବ । ୧୯୯୧, ଜୁନ ୨୪ରେ ଉତ୍ତରପ୍ରଦେଶର ବି: ଜେ: ପି: ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂହ, ସମ୍ବିଧାନ ରକ୍ଷା କରିବାର ଶପଥ ନେଲା ଏବଂ ପରଦିନ ଅନ୍ୟ ମନ୍ତ୍ରୀମାନଙ୍କୁ ସାଙ୍ଗରେ ନେଇ ଅଯୋଧ୍ୟାର ସେହି ବିବାଦୀୟ ସ୍ଥାନରେ ପ୍ରବେଶ କରି ସେଠି ଶପଥ ନେଲେ ଯେ ମସ୍‌ଜିଦ ସ୍ଥାନରେ ମନ୍ଦିର ନିର୍ମାଣ କରିବେ, ଅର୍ଥାତ୍ ଭାରତୀୟ ସମ୍ବିଧାନକୁ ଭଙ୍ଗ କରିବେ । କାରଣ ସେଥିଲାଗି ସର୍ବପ୍ରଥମେ ମସ୍‌ଜିଦକୁ ଭାଙ୍ଗିବାକୁ ହେବ, ଠିକ୍ ତାହାହିଁ ହୋଇଛି ।

ସେ ଦିଗରେ ଆଇନ କାନୁନ୍, ଦେଶର ସମ୍ବିଧାନ ଓ ପରମ୍ପରା ଆଦି ଲଙ୍ଘନ କରିବାରେ ବି: ଜେ: ପି: ସରକାର ଯେତେ ପଦକ୍ଷେପ ନେଇଛନ୍ତି, ସେ ସବୁର ବର୍ଣ୍ଣନା ଏଠାରେ ସମ୍ଭବ ନୁହେଁ । ପ୍ରଥମ ଚେଷ୍ଟା ହୋଇଛି, ୪୨ ବର୍ଷ ତଳେ ତତ୍କାଳୀନ ୟୁ: ପି: ସରକାର କରିଥିବା ସେହି ମକଦ୍ଦମାର ଅର୍ଜିକୁ ବଦଳାଇବା । ଦ୍ୱିତୀୟ ଚେଷ୍ଟା ହେଲା, ମସ୍‌ଜିଦ ସଂଲଗ୍ନ ବିବାଦୀୟ ୨.୭୭ ଏକର ଜମିକୁ ସର୍ବସାଧାରଣ ଉଦ୍ଦେଶ୍ୟରେ ଦଖଲ କରିବା । ଅସଲ ଉଦ୍ଦେଶ୍ୟ ହେଲା ସେଇଠୁ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା । ତାଙ୍କର ସବୁ ପଦକ୍ଷେପକୁ ହାଇକୋର୍ଟ ଗୋଟି ଗୋଟି ଉଠାଇ ଦେଇଛି । ବି. ଜେ: ପି: ସରକାରଙ୍କ ଶେଷ ବକ୍ତବ୍ୟ ହେଲା, ସିଏ ତା କରିବାଲାଗି ଭୋଟଦ୍ୱାରା ଜନମତ ଲାଭ କରିଛନ୍ତି । ତା ବହୁମତ ନୁହେ ପୂରାପୂରି ଗୋଟାଏ ପ୍ରତାରଣା । ବି: ଜେ: ପି: ରାଜ୍ୟର ମାତ୍ର ଶତକଡ଼ା ୩୨ ଭାଗ ତା' ବହୁମତ ନୁହେଁ, ଭୋଟ ପାଇଛି । ସବୁ ଲୋକେ ରାମ

ମନ୍ଦିର ନିର୍ମାଣ ଲାଗି ମତ ଦେଇପାରନ୍ତି କିନ୍ତୁ ରାଜ୍ୟର ସେ ସମସ୍ତ ଲୋକ ଯେ ମସ୍‌ଜିଦ ଭାଙ୍ଗିବା ପକ୍ଷରେ, ତା' କଦାପି ବୁଝାଯାଇ ନପାରେ । ମନ୍ଦିର ମସ୍‌ଜିଦ ଆଦି ଉପାସନା ସ୍ଥଳ ଓ ଐତିହାସିକ କୀର୍ତ୍ତି, ତାକୁ ଭାଙ୍ଗିବା ସମ୍ବିଧାନ ବିରୋଧୀ କାର୍ଯ୍ୟ । ଏପରିକି କୌଣସି ଏକ ରାଜ୍ୟର ସବୁଲୋକ ଚାହିଁଲେ ବି ସମସ୍ତ ଦେଶର ସମ୍ବିଧାନକୁ ବଦଳାଇ ଦେଇ ପାରିବେ ନାହିଁ । ସେଥିଲାଗି ସର୍ବଭାରତୀୟ ସ୍ତରରେ ପାର୍ଲିଆମେଣ୍ଟରେ ଦୁଇ ତୃତୀୟାଂଶ ସଭ୍ୟଙ୍କ ମତ ଲୋଡ଼ା, ଅଧିକାଂଶ ଅଙ୍ଗ ରାଜ୍ୟର ସ୍ୱୀକୃତି ଆବଶ୍ୟକ ଇତ୍ୟାଦି । ହାଇକୋର୍ଟ ଉତ୍ତର ପ୍ରଦେଶ ବି: ଜେ: ପି: ସରକାରଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ, କହିଥିଲେ ତାହା ସମ୍ବିଧାନକୁ ଲଙ୍ଘନ କରେ, ତା'ର ପରିଣତି ଅତି ଭୟାବହ ଓ ବିପଦପୂର୍ଣ୍ଣ ।

ଯାହା ଆଇନ ଅଦାଲତ ଦ୍ୱାରା ନ ହେଲା, ତାକୁ କରିବାର ଏକମାତ୍ର ଉପାୟ ହେଲା, ବେଆଇନ ପନ୍ଥା ଓ ବଳର ପ୍ରୟୋଗ । ଏବେ ଠିକ୍ ତାହାହିଁ ହେଲା । ବାବରୀ ମସ୍‌ଜିଦ ଉପରେ ବି: ଜେ: ପି: ସରକାର ଓ ହିନ୍ଦୁ ସାଂପ୍ରଦାୟିକତା ଦୁଇଦିଗରୁ ଷଣ୍ଢୁଆସୀ ଆକ୍ରମଣ ହେଲା । ତା'ର କର୍ମପନ୍ଥା ହେଲା, ସେଇ ସାଂପ୍ରଦାୟିକ ଭାବକୁ ଜାଗ୍ରତ କରି ଲୋକଙ୍କୁ ମତେଇବା, ତାଙ୍କୁ ସେ ଦିଗରେ ଉତ୍ସାହିତ ଓ ସଙ୍ଗଠିତ କରିବା । ତାହା କେବଳ ଉତ୍ତରପ୍ରଦେଶରେ ସୀମିତ ରହିଲା ନାହିଁ, ତାହା ସର୍ବଭାରତୀୟ ସ୍ତରରେ ଆରମ୍ଭ ହୋଇଗଲା । ବି: ଜେ: ପି: ସରକାରୀ ସହାୟତାରେ ବଳପୂର୍ବକ ସେମାନେ ଯେ ମସ୍‌ଜିଦ ଭାଙ୍ଗିବାକୁ ଯାଉଛନ୍ତି ତା'ର ସମ୍ଭାବନା ପ୍ରତିଦିନ ବୃଦ୍ଧି ପାଇବାରେ ଲାଗିଲା । ଲୋକଙ୍କ ମନରୁ ସନ୍ଦେହ ଆଶଙ୍କା ଦୂର କରିବା ଲାଗି ୟୁ: ପି: ସରକାର ଓ ବି: ଜେ: ପି: ସେଥିପ୍ରତି ପ୍ରତିଶ୍ରୁତି ଦେବାରେ ଲାଗିଲା । ଅଦାଲତ ଆଗରେ ପ୍ରତିଶ୍ରୁତି ଦିଆହେଲା ବିବାଦୀୟ ସୌଧ ସଲଗ୍ନ ଜମି ସୁରକ୍ଷିତ ରହିବ । ପାର୍ଲିଆ-ମେଣ୍ଟରେ ବି: ଜେ. ପି: ନେତା ପ୍ରତିଶ୍ରୁତି ଦିଅନ୍ତି ଯେ ଆପୋଷ କଥାବାର୍ତ୍ତା ବା ଅଦାଲତ ଜରିଆରେ କୌଣସି ବିଷୟ ନିଷ୍ପତ୍ତି ନ ହେଲା ପର୍ଯ୍ୟନ୍ତ କିଛି ହେବ ନାହିଁ । ସେହିପରି ତାଙ୍କ ପ୍ରତିନିଧି ଜାତୀୟ ସଂହତି ପରିଷଦରେ (National Integration Council) ପୂର୍ବର ପ୍ରତିଶ୍ରୁତି ଦିଅନ୍ତି ଯେ ସମସ୍ତ ବିଷୟ କଥାବାର୍ତ୍ତା ଜରିଆରେ ନିଷ୍ପତ୍ତି ହେବ ! ଅଦାଲତ ଆଗରେ ଏପରିକି ସେ ସମ୍ବନ୍ଧରେ ଶପଥପାଠ ମଧ୍ୟ ହୁଏ । ଏ ସବୁର ଏକମାତ୍ର ଉଦ୍ଦେଶ୍ୟ ରହିଲା ସର୍ବୋଚ୍ଚ ବିଚାରାଳୟ ପ୍ରତିନିଧି ସଭାଠାରୁ ଆରମ୍ଭ କରି ସାରା ଦେଶ-ସବୁ ଲୋକଙ୍କୁ ପ୍ରତାରିତ କରିବା ।

ତେଣେ ମସ୍‌ଜିଦ ଭଙ୍ଗା ମନ୍ଦିର ନିର୍ମାଣର ଆୟୋଜନ ଜୋରସୋରରେ ଆରମ୍ଭ ହୋଇଗଲା । କରସେବକମାନେ ଚାରିଆଡ଼ୁ ଆସି ଠୁଳ ହେବାରେ

ଲାଗିଲେ । ଉତ୍ତରପ୍ରଦେଶ ସରକାର ତାଙ୍କୁ ସକଳ ସାହାଯ୍ୟ ସୁଯୋଗ ଯୋଗାଇ ଦେଲେ । ଏପରିକି ଡ଼ିସେମ୍ବର ୬, ୧୯୯୨ରେ ମସ୍‌ଜିଦ ଭଙ୍ଗା ହେଉଥିବାବେଳେ ପୁଲିସ ମାଜିଷ୍ଟ୍ରେଟ ସବୁ ନୀରବ ଦର୍ଶକ ସାଜି ଠିଆହୋଇ ରହିଲେ । ସବୁ ଦେଖି ଜାଣି ବୁଝି କିଛି ଜାଣୁ ନଥିଲେ । କରସେବା ଲାଗି ବି. ଜେ. ପି. ନେତା ଆଡ଼ଭାନୀ ଓ ମୁରଲୀ ମନୋହର ଯୋଶୀ ମଥୁରା କାଶୀରୁ ସ୍ୱତନ୍ତ୍ରଭାବେ ରଥଯାତ୍ରା କରି କରସେବକଙ୍କ ସହ ଆସିଥିଲେ । ଆଗରୁ ଭଙ୍ଗାଭଙ୍ଗି କରିବାରେ ତାଲିମପ୍ରାପ୍ତ କରସେବକ ଦଳଙ୍କ, ଗଇନ୍ତି ସହ ଉପସ୍ଥିତ ଥିଲେ । ଅଳ୍ପ ସମୟ ମଧ୍ୟରେ ଅତି ବିଚକ୍ଷଣତାର ସହ ସମସ୍ତ କାର୍ଯ୍ୟ ସମାପିତ ହେଲା । ଶାନ୍ତିରକ୍ଷା ପୁଲିସ ଫୋର୍ସଙ୍କୁ ମଧ୍ୟ ଡକାଗଲା ନାହିଁ । ଆସୁଥିବା ଫୋର୍ସଙ୍କୁ ମଧ୍ୟ ଅଧାବାଟରୁ ଫେରାଇ ଦିଆଗଲା । କେନ୍ଦ୍ର ସରକାର ଯଥେଷ୍ଟ ସଂଖ୍ୟକ ପୁଲିସ ଓ ଅର୍ଦ୍ଧସାମରିକ ବାହିନୀ ଯୋଗାଇ ଦେଇଥିଲେ ମଧ୍ୟ ତାଙ୍କୁ ବ୍ୟବହାର କରାଗଲା ନାହିଁ । କରସେବକଙ୍କ ଆକ୍ରମଣର ଶିକାର ହେବା ଲୋକଙ୍କୁ ରକ୍ଷା କରାଗଲା ନାହିଁ । ଏପରିକି ସେଠି ଭୁକ୍ତ ହୋଇଥିବା ସାମ୍ବାଦିକମାନଙ୍କୁ ମଧ୍ୟ ସେମାନଙ୍କ ଆକ୍ରମଣରୁ ରକ୍ଷା କରାଗଲା ନାହିଁ । ଏ ସମସ୍ତ ଘଟଣା ମଧ୍ୟ ବି. ଜେ. ପି. ନେତାମାନଙ୍କ ଆଗରେ ଘଟୁଥିଲା । ସେମାନେ କେବଳ ମସ୍‌ଜିଦ ଧୂଳିସାତ୍ ହେବାରେ ଆନନ୍ଦ ଗୌରବରେ କୋଳାକୋଳି ହୋଇ ନାଚୁଥିଲେ ।

ସାଧାରଣତଃ ମଣିଷ ଭଲ କାମକୁ—ପୁଣ୍ୟ କାର୍ଯ୍ୟକୁ ଲୋକରେ ପ୍ରଚାରକରେ, ସମସ୍ତଙ୍କୁ ଜଣାଏ; କିନ୍ତୁ ତା' କୁକର୍ମକୁ ଘୋଡ଼ାଇବାକୁ ଚାହେଁ । ତାକୁ ଲୁଚାଇବାର ଯଥାସମ୍ଭବ ଚେଷ୍ଟା କରେ । କେତେଠି ଦେଖିଲା ଲୋକଙ୍କୁ ମଧ୍ୟ ତାହା ଅନେକ ସମୟରେ ଖତମ କରିଦିଏ—ଯେପରିକି ତା'ର ପାପ କାର୍ଯ୍ୟର କୌଣସି ସାକ୍ଷ୍ୟ ପ୍ରମାଣ ନରହେ । ଠିକ୍ ତାହାହିଁ ଘଟିଛି, ବି. ଜେ. ପି. ଓ ସଙ୍ଘ ପରିବାରଙ୍କ କ୍ଷେତ୍ରରେ । ସେମାନେ ଭଲକରି ଜାଣନ୍ତି ଯେ ତାଙ୍କର ସେହି କାର୍ଯ୍ୟ ଯେତେ ଭୋଟ ପ୍ରାପ୍ତିର ମାର୍ଗ ହେଲେ ବି କୌଣସି ବିଧି ନିୟମସମ୍ମତ ନୁହେଁ, ଅତି ନିନ୍ଦନୀୟ । ଏମିତିକି ସାଧାରଣ ରୁଚିବୋଧର ବିରୋଧୀ, ମଧ୍ୟଯୁଗୀୟ ବର୍ବରତାର ଲକ୍ଷଣ, ବର୍ତ୍ତମାନର ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ଘୋର ଲଜ୍ଜା, ଘୃଣା ଓ ପରିତାପର ବିଷୟ । କେଣୁ ସେମାନେ ଚାହିଁଥିଲେ ସେହି ପାପକର୍ମକୁ ଚାପିଦେବା ଲାଗି, ତା'ର ସାକ୍ଷ୍ୟ ପ୍ରମାଣକୁ ଲୋପାଇ ଦେବା ପାଇଁ । ଯେପରି ଜଣାପଡ଼ିବ ନାହିଁ କେଉଁ ଲୋକମାନେ ତା'ର ପ୍ରକୃତ କର୍ତ୍ତା । ତା'ର ପ୍ରକାଶକୁ ବନ୍ଦ କରିବାର ଏକମାତ୍ର ବାଟ ହେଲା ସେଠାରେ ଉପସ୍ଥିତ ସାମ୍ବାଦିକ, ପତ୍ରପତ୍ରିକାମାନଙ୍କର ପ୍ରତିନିଧି, ପତ୍ରକାରିକ, ଫଟୋଗ୍ରାଫର, ଭି. ଡ଼ି. ଓ. ଫଟୋବାଲା ଆଦିଙ୍କୁ ତାଙ୍କର କାର୍ଯ୍ୟରୁ ନିବୃତ୍ତ କରିବା । ତା'ର ଏକମାତ୍ର ଉପାୟ ହେଲା ବଳର ପ୍ରୟୋଗ ।

ତେଣୁ ବ: ଜେ: ପି:, ଆର୍: ଏସ୍: ଏସ୍:, ହିନ୍ଦୁ ମହାସଭା, ବଜରଙ୍ଗ ଦଳ, ଶିବସେନା ଆଦିଙ୍କର କରସେବକମାନେ ତାଙ୍କ ଉପରେ ଝାଂପି ପଡ଼ିଛନ୍ତି, ତାଙ୍କୁ ମାଡ଼ମାରି ରକ୍ତ ସ୍ନାନ କରିଛନ୍ତି । ତାଙ୍କର କାଗଜପତ୍ର ଛଡ଼ାଇ ନେଇଛନ୍ତି, କ୍ୟାମେରା ଭାଙ୍ଗିଛନ୍ତି, ଉଠାଇଥିବା ଫଟୋକୁ ନଷ୍ଟ କରିଛନ୍ତି । ଚେଷ୍ଟା କରିଛନ୍ତି ସମସ୍ତ ତଥ୍ୟକୁ ଲୋପ କରିବାଲାଗି । ଯେତେ ଯାହା ହେଲେ ବି ସେହି ସତ୍ୟ, ରକ୍ତର ସାଗରରେ ବୁଡ଼ିବାର ନୁହେଁ । ଭାରତୀୟ ସାମ୍ବାଦିକ ସଙ୍ଘ, ବିଭିନ୍ନ ସମ୍ବାଦପତ୍ର ସେହି ଷଡ଼ଯନ୍ତ୍ରକୁ ଖୋଲି ଦେଇଛନ୍ତି ।

ମସ୍‌ଜିଦ ଧୂଳିସାତ୍ ହେଲା, ନିଜର ଉଦ୍ଦେଶ୍ୟ ସାଧନ କଲାପରେ ୟୁ ପି ର ବ: ଜେ. ପି: ମୁଖ୍ୟମନ୍ତ୍ରୀ, ସେଇ ଘଟଣା ଲାଗି ଇସ୍ତଫା ଦେଲେ । କାରଣ ସେ ଏଇ ମହତ୍ କାର୍ଯ୍ୟ କଲା ପରେ ସେ ଆଉ ମୁଖ୍ୟ ରହିବାକୁ ଉଚିତ ମଣିଲେ ନାହିଁ । ତା' ଠାରୁ ଆହୁରି ହାସ୍ୟାସ୍ପଦ ହେଉଛି, ସେ ଇସ୍ତଫା ଦେଇ ସାରିଲା ଉତ୍ତାରୁ ନରସିଂହ ରାଓ ସରକାର ତାଙ୍କୁ ଡିସ୍‌ମିସ୍ କଲେ । ବ: ଜେ: ପି: ନେତାମାନଙ୍କର ବକ୍ତବ୍ୟ ହେଲା, ସେଠି ବହୁଲୋକ ରୁଣ୍ଡ ହୋଇଗଲେ, ସେମାନଙ୍କ ଉପରେ ନେତାଙ୍କର କୌଣସି କଣ୍ଟ୍ରୋଲ ରହିଲା ନାହିଁ । ତେଣୁ ସେମାନେ ଦାୟୀ ନୁହନ୍ତି । ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ବକ୍ତବ୍ୟ ହେଲା, ଶାନ୍ତି ଶୃଙ୍ଖଳା ରକ୍ଷା ରାଜ୍ୟ ସରକାରଙ୍କ ଦାୟିତ୍ୱ, ସେ ହସ୍ତକ୍ଷେପ କରି ପାରିଲେ ନାହିଁ । ଅତଏବ ସେ ମଧ୍ୟ ଦାୟୀ ନୁହନ୍ତି ।

ଅଥଚ ଜାତୀୟ ସଂହତି ପରିଷଦରେ ସବୁ ରାଜନୈତିକ ଦଳ ବାବରୀ ମସ୍‌ଜିଦ ରକ୍ଷାଦିଗରେ ନରସିଂହ ରାଓଙ୍କୁ ଅକୁଣ୍ଠ ସମର୍ଥନ ଜଣାଇଛନ୍ତି । ତାଙ୍କ ହାତରେ ଅଖଣ୍ଡ କ୍ଷମତା ଅର୍ପଣ କରିଛନ୍ତି । କ'ଣ ଘଟିବାକୁ ଯାଉଛି ସେ ସମ୍ପର୍କରେ କେନ୍ଦ୍ର ସରକାର ନିଶ୍ଚୟ ଅବଗତ ଅଛନ୍ତି । ଗୁଇନ୍ଦା ବିଭାଗରୁ ସବୁ ଖବର ପାଇ ମଧ୍ୟ ସେ ନୀରବ ରହିଲେ କାହିଁକି ? ଭଙ୍ଗାରୁଜା କାର୍ଯ୍ୟ — ସେ ସମସ୍ତ ଘଟଣା ୬।୭ ଘଣ୍ଟା ଧରି ଚାଲିଛି । ମୁହୂର୍ତ୍ତିକୁ ମୁହୂର୍ତ୍ତି କେନ୍ଦ୍ର ସରକାର ନିଶ୍ଚୟ ଖବର ପାଇଥିବେ । ତେବେ ସୁଦ୍ଧା ଚୁପ ହୋଇ ରହିବାର କ'ଣ କାରଣ ? ସଙ୍ଗେ ସଙ୍ଗେ ବ. ଜେ. ପି. ସରକାରକୁ ବରଖାସ୍ତ ନ କଲେ କାହିଁକି ? କେନ୍ଦ୍ର ସରକାର ନିଜେ ଶାସନ କ୍ଷମତା ହାତକୁ ନେଲା ପରେ ମଧ୍ୟ ୩୬ ଘଣ୍ଟା କାଳ କ'ଣ କରୁଥିଲା ? ଠିକ୍ ଏତେବେଳେ ଅସ୍ଥାୟୀ ମନ୍ଦିର ତିଆରି, ରାମମୂର୍ତ୍ତି ସ୍ଥାପନ

ଆଉ କାର୍ଯ୍ୟ ଚାଲିଛି । ତାହା ଚାଲିବାକୁ କିପରି ଛାଡ଼ି ଦିଆଗଲା ? ଏହାର କୌଣସି ଯଥାର୍ଥ ଉତ୍ତର ନାହିଁ । (*)

ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ଏକମାତ୍ର ସଫେଇ, ତାଙ୍କୁ ବିଶ୍ୱାସରେ ବିଷ ଦିଆଗଲା ? ସିଏ ଯାହାଙ୍କୁ ବିଶ୍ୱାସ କରିଥିଲେ ସେମାନେ କିଏ ? ଯେଉଁମାନେ କି ମସ୍‌ଜିଦ ଭାଙ୍ଗି ମନ୍ଦିର ନିର୍ମାଣ କରିବେ ବୋଲି ପ୍ରକାଶ୍ୟରେ ଘୋଷଣା କରନ୍ତି ସେଥିଲାଗି ଖୋଲାଖୋଲି ପ୍ରସ୍ତୁତି ଚଳାନ୍ତି ଏବଂ ଚାରିଆଡ଼ୁ ତଥାକଥିତ କରସେବକଙ୍କୁ ନେଇ ଠୁଳ କରନ୍ତି, ଏ କୌଣସିଟି କଥା, ନରସିଂହ ରାଓଙ୍କୁ ଅଗୋଚର ନୁହେଁ । ପ୍ରକୃତରେ ଯାହା ତାଙ୍କୁ ପଛକୁ ଟାଣି ଧରିଛି ତା' ହେଉଛି ସେହି ଧର୍ମ-ରାଜନୀତି । କୌଣସି କଠୋର ପଦକ୍ଷେପ ନେଲେ, ବଳପୂର୍ବକ ରୋକିବାକୁ ଚେଷ୍ଟାକଲେ ହିନ୍ଦୁ ଭୋଟ ହାତରୁ ଖସିଯିବ ପରା ! ଯାହାକୁ ପ୍ରଥମରୁ ସହଜରେ ରୋକାଯାଇ ପାରିଥାନ୍ତା, ତା' ନ କରିବା ଦ୍ୱାରା ବହୁମୂଲ୍ୟ ଦେବାକୁ ପଡ଼ୁଛି । ୧୯୯୨ ଡିସେମ୍ବର ୬ ତାରିଖ ପରେ ଦେଶସାରା ସାଂପ୍ରଦାୟିକ ଦଙ୍ଗା ଫାଟି ପଡ଼ୁଛି । ବିଶେଷ କରି ସୁରଟ ଓ ବମ୍ବେରେ ଅତି ବ୍ୟାପକ ପୋଡ଼ାଜଳା, ହିଂସା, ଧର୍ଷଣ ହତ୍ୟା ଦେଖାଦେଇଛି, ଯାହାକି ଆଗେ ନଥିଲା । ସର୍ବଧର୍ମ ସମନ୍ୱୟ ପୂର୍ବର ସେହି ମହାଭାରତୀୟ ସଂସ୍କୃତିରେ ପହଞ୍ଚିବା ପାଇଁ ଭାରତକୁ ଯେ ପୁଣି ଆଉ କେତେ ରକ୍ତର ସାଗର ପାରିହେବାକୁ ହେବ, କିଏ କହିବ !

ଦେଶର ଜାତୀୟ ଜୀବନରେ କ'ଣ ସେହି ଧର୍ମାନ୍ଧ ସାଂପ୍ରଦାୟିକତାର ଭୂମିକା ? ତାହା ଦେଶକୁ କୁଆଡ଼େ ନେଇଯାଏ ? ତା'ର ସେଇ ବିଭୀଷିକାର

---

* ମସ୍‌ଜିଦ ଉପରେ ଚଢ଼ାଉ ଆରମ୍ଭ ହୁଏ ଡିସେମ୍ବର ୬ ତାରିଖ ଦିନ ଘ ୧୧.୫୦ ମିନିଟରେ । ତା'ର ୩ଘଣ୍ଟା ପରେ ଘ ୨.୪୫ରେ ପ୍ରଥମ ଗମ୍ବୁଜର ପତନ ଘଟେ, ଶେଷଟି ଧୂଳିସାତ୍ ହୁଏ, ଘ ୪ଟା୪୫ରେ । ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂହ ଇସ୍ତଫା ଦିଅନ୍ତି ଘ ୫.୩୦ରେ । (ସେ ୪ ଏପ୍ରିଲ, ୧୯୯୩ରେ ଘୋଷଣା କରନ୍ତି, "କରସେବକ-ମାନେ ତାଙ୍କ କାର୍ଯ୍ୟସମ୍ପାଦନ କରିସାରିଲା ପରେ ମୁଁ ଇସ୍ତଫା ଦେଲି) । କେନ୍ଦ୍ରମନ୍ତ୍ରୀ ମଣ୍ଡଳର ବୈଠକ ବସେ । ତା'ପରେ ସନ୍ଧ୍ୟା ୬ ଟାରେ, ତା'ର ତିନିଘଣ୍ଟା ପରେ ଉତ୍ତରପ୍ରଦେଶରେ ରାଷ୍ଟ୍ରପତି ଶାସନ ଜାରି ହୁଏ । ଇତିମଧ୍ୟରେ ଘ ୬.୪୫ରେ ଭଙ୍ଗା ମସ୍‌ଜିଦ ଉପରେ ରାମମୂର୍ତ୍ତି ଆସନ ହୁଏ । ତା'ର ୪୫ ମିନିଟରେ ତା' ଉପରେ ଅସ୍ଥାୟୀ ଘର ନିର୍ମାଣ ଆରମ୍ଭ ହୁଏ । ଏସବୁ ହୋଇଲାପରେ ୮ ତାରିଖ ଦିନ ରାତି ୩.୩୦ରେ ସି.ଆର୍.ପି. ଫୋର୍ସ ଆସନ୍ତି ସେଠୁ ଲୋକଙ୍କୁ ଘଉଡ଼ାଇବାଲାଗି, — ଘଟଣା ଘଟିବାର ୪୦ ଘଣ୍ଟା ପରେ ।

କଲ୍ପନାରେ ସାହିତ୍ୟ ରଚନା ଅଣ ଉଠେ, ତା'ର ଭବିଷ୍ୟତର ସେହି ଭୟାବହ ପରିଣତିକୁ ବର୍ଣ୍ଣନା କରନ୍ତି, ସାହିତ୍ୟିକ ଅନ୍ନଦାଶଙ୍କର ରାଏ। ସିଏ ବଙ୍ଗଳା ସାହିତ୍ୟରେ ସୁନାମଧନ୍ୟ ଲେଖକ ହେଲେ ବି ଓଡ଼ିଆ ସାହିତ୍ୟ ରାଜ୍ୟରେ ସୁପରିଚିତ।

"ମଧ୍ୟଯୁଗ ଇଉରୋପରେ ଖ୍ରୀଷ୍ଟିଆନମାନେ ଗ୍ରୀକ୍ ଓ ରୋମାନ ମନ୍ଦିରକୁ ଭାଙ୍ଗି ଗୀର୍ଜା ଗଢ଼ନ୍ତି। ପରେ ତୁର୍କୀର ମୁସଲମାନମାନେ ଗୀର୍ଜାକୁ ମସ୍‌ଜିଦରେ ରୂପାନ୍ତରିତ କରନ୍ତି। ଆଉ ପରେ କ୍ୟାଥଲିକ୍‌ଙ୍କର ମଠବାଡ଼ିକୁ ପ୍ରୋଟେଷ୍ଟାଣ୍ଟ ଧ୍ୱଂସ କରନ୍ତି। ସେହି ପ୍ରୋଟେଷ୍ଟାଣ୍ଟକୁ ମାରି ତଡ଼ି ଦିଅନ୍ତି କ୍ୟାଥଲିକ। ସେ କାଳରେ ଏଇଟା ଥିଲା ଯୁଗ ଇଚ୍ଛା। ଅଷ୍ଟାଦଶ ଶତାବ୍ଦୀରେ ଏନ୍‌ଲାଇଟମେଣ୍ଟ ପରଠାରୁ ଧର୍ମ ଯୋଗୁ ଆଉ ମାରାମାରି ବା ଭଙ୍ଗାରୁଜା ଘଟିନାହିଁ। ମସ୍‌ଜିଦକୁ ଭାଙ୍ଗି ମନ୍ଦିର କରିବାକୁ ଦେବ, ଇଉରୋପ-ଆମେରିକାର ଲୋକେ ଏହା ଭାବି ପାରନ୍ତି ନାହିଁ। ଆମେ ପନ୍ଦରଶହ ବର୍ଷ ପାରିହୋଇ ଆସିଛୁ ବୋଲି ମେଣ୍ଟବାନ୍ଧି ମସ୍‌ଜିଦ ଭାଙ୍ଗିବାକୁ ଯାଉଛୁ।

"ଅଯୋଧ୍ୟାରେ ବାବରି ମସ୍‌ଜିଦ ବନାମ ରାମ ମନ୍ଦିର ପ୍ରଶ୍ନରେ ଯଦି ହିନ୍ଦୁ ରାଷ୍ଟ୍ରବାଦୀମାନେ ଜିତନ୍ତି, ତା'ହେଲେ ମସ୍‌ଜିଦ ଭାଙ୍ଗିବ, ଫଳରେ ମୁସଲମାନ ପ୍ରାଧାନ୍ୟ କାଶ୍ମୀର, ଶିଖ ପ୍ରାଧାନ୍ୟ ପଞ୍ଜାବ, ଖ୍ରୀଷ୍ଟିଆନ ପ୍ରାଧାନ୍ୟ ନାଗାଲାଣ୍ଡ, ମିଜୋରାମ ଓ ମେଘାଳୟ ବିଦ୍ରୋହୀ ହେବେ, ତାକୁ ଦମନ କରିବାକୁ ଯାଇ ଭାରତୀୟ ସେନାବାହିନୀ ନିଜେ ବିଭକ୍ତ ହେବ, ଭାରତ ଭାଙ୍ଗି ଟୁକୁରା ଟୁକୁରା ହୋଇଯିବ।"

"ଭୋଟ ରାଜନୀତି ଆମକୁ କେଉଁଠି କି ନେଇଯିବ କହିହେବ ନାହିଁ। ଆମର ଗର୍ବ, ଆମର ଆଶା ସିକୁଲାର ଷ୍ଟେଟ କା' କବଳରେ ପଡ଼ିବ କିଏ ଜାଣେ, ଇଣ୍ଡିଆନ ପାର୍ଲିଆମେଣ୍ଟ ଯଦି ହିନ୍ଦୁ ମହାସଭା ହୋଇଯାଏ, ତେବେ ଇଣ୍ଡିଆନ ଆର୍ମି ମଧ୍ୟ ହିନ୍ଦୁ ଆର୍ମି ହୋଇଯାଇପାରେ।…"

× × ×

"ନେହରୁମାନେ ହେଉଛନ୍ତି ଭାରତୀୟ ଯାହାଙ୍କ ଆଗରେ ଭାରତ ନାମକ ଦେଶର ସ୍ୱାର୍ଥ ହିନ୍ଦୁ ନାମକ ସଂପ୍ରଦାୟର ସ୍ୱାର୍ଥଠାରୁ ବଡ଼, ହିନ୍ଦୀ ନାମକ ଭାଷାର ସ୍ୱାର୍ଥ ଠାରୁ ବଡ଼, ବ୍ରାହ୍ମଣ ନାମକ ଜାତିର ସ୍ୱାର୍ଥଠାରୁ ବଡ଼, ଉତ୍ତର ପ୍ରଦେଶ ରାଜ୍ୟର ସ୍ୱାର୍ଥ ଠାରୁ ବଡ଼,……ଧର୍ମ-ରାଷ୍ଟ୍ର, ଓ ରାଷ୍ଟ୍ର ଧର୍ମ କୌଣସିଟା ଆଧୁନିକ ଯୁଗରେ ରହିପାରିବ ନାହିଁ। ଦେଶର ସ୍ୱାର୍ଥ ଧର୍ମ ସଂପ୍ରଦାୟର ସ୍ୱାର୍ଥଠାରୁ ବଡ଼।"

"ପରସ୍ପର ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ ହେବାହିଁ ଶ୍ରେଷ୍ଠ ପନ୍ଥା । ହିନ୍ଦୁ ମୁସଲମାନ ଉଭୟଙ୍କୁ ସେଇ ପନ୍ଥା ଅବଲମ୍ବନ କରିବାକୁ ହେବ । ସେଇ ପଥରେ ହିଁ ଭାରତର ଶ୍ରୀବୃଦ୍ଧି ବୈଚିତ୍ର୍ୟର ମଧ୍ୟରେ ଐକ୍ୟ, ଭାରତର ସଭ୍ୟତା ସଂସ୍କୃତିର ମୂଳତତ୍ତ୍ୱ । ଯେଉଁମାନେ ଆସିଛନ୍ତି ସେମାନେ "ହେବେ ଆର ଦିବେ ମିଲିବେ ମିଲିବେ, ଯାବେନା ଫିରେ, ଏଇ ଭାରତେର ମହାମାନବେର ସାଗରତୀରେ ।"

"... ଧର୍ମର ନାମରେ ମତାଇ ଦେଲେ ଅଧିକାଂଶ ହିନ୍ଦୁ ଭୋଟର, ହିନ୍ଦୁ ରାଷ୍ଟ୍ରର ପ୍ରାର୍ଥୀଙ୍କୁ ଭୋଟ ଦେବେ । ଧର୍ମ ନାମରେ ମତାଇବାକୁ କେହି ବନ୍ଦ କରିପାରିବ ନାହିଁ, ପୁଲିସର ସାଧ୍ୟ ନାହିଁ, ଆଇନର ମଧ୍ୟ ଅସାଧ୍ୟ । ଯେଉଁଠି ଦୃଷ୍ଟି ନାହିଁ, ସେଠି ଅନ୍ଧମାନେ ଅନ୍ଧଙ୍କ ଦ୍ୱାରା ଚାଳିତ ହୋଇ ଗାତରେ ପଡ଼ିବେ । ହଁ, ହିନ୍ଦୁ ରାଷ୍ଟ୍ର ହେବ, ତା'ର ଦେଶ୍ କେତୋଟି ଅଙ୍ଗ ଖସିଯିବ । ସେଇଟା ସବୁ ରାଷ୍ଟ୍ର ଦେଇ ଶନି ପ୍ରବେଶ କରିବ......

"ଜୟ ହିନ୍ଦ" ଆଉ ଜୟ ହିନ୍ଦୁ"—ଏ ଦୁଇ ସ୍ଲୋଗାନ ମଧ୍ୟରେ ଯେଉଁ ପାର୍ଥକ୍ୟ, ଭାରତୀୟ ଜାତୀୟତାବାଦ ଓ ହିନ୍ଦୁ ଜାତୀୟତାବାଦ ମଧ୍ୟରେ ସେଇ ପାର୍ଥକ୍ୟ । 'ଜୟହିନ୍ଦ'କୁ ଛାଡ଼ି 'ଜୟ ହିନ୍ଦୁ', ଯେତେ ଜନପ୍ରିୟ ହେବ, ଭାରତୀୟ ସ୍ୱାଧୀନତା ସଂଗ୍ରାମ ସେତେ ଦୁର୍ବଳ ହେବ । "ହିନ୍ଦୁ"ର ଜୟଯାତ୍ରା "ହିନ୍ଦ"ର ପରାଜୟକୁ ଡାକି ଆଣିବ । ସାବଧାନ !" ( ପରିଚୟ, ଏପ୍ରିଲ ୧୯୧୯ )

ରାଜନୀତିରୁ ଧର୍ମକୁ ଅଲଗା କରିବା କଥା ଉଠିଲେ ଅନେକ ତା'ର ବିରୋଧ କରନ୍ତି, କହନ୍ତି ଧର୍ମକୁ ଛାଡ଼ି ରାଷ୍ଟ୍ର ଚାଲିବ କିପରି ? କିନ୍ତୁ ଧର୍ମ ତ ଏକ ନୁହେଁ, ବହୁ,—ଭାରତ ପୁଣି ବହୁଧର୍ମର ଦେଶ । ତେଣୁ କେଉଁ ଧର୍ମ ସହିତ ତାହା ଯୋଡ଼ା ହେବ ? ତାହା ଯଦି ଦେଶରେ ଥିବା ସବୁ ଧର୍ମ ସହିତ ଯୋଡ଼ାହୁଏ, ସବୁ ମତରେ ଚାଲେ, ତେବେ ସେ ଯିବ କୁଆଡ଼େ ? ନାହିଁ ଯଦି ଦେଶର ବିଭିନ୍ନ ଅଞ୍ଚଳରେ ରହିଥିବା ସଂଖ୍ୟାଧିକ ଧର୍ମ ମତରେ ସେହି ଅଞ୍ଚଳର ରାଷ୍ଟ୍ରନୀତି ଚାଲେ, ତେବେ ଭାରତ ବିଭିନ୍ନ ଖଣ୍ଡରେ ବିଭକ୍ତ ହୋଇଯିବ । ଆଉ ଗୋଟାଏ ହୋଇ ରହିପାରିବ ନାହିଁ । ନାହିଁ ଯଦି ଦେଶର ସଂଖ୍ୟାଧିକ ଲୋକଙ୍କ ଧର୍ମ ମତରେ ତାହା ଚାଲେ—ଅର୍ଥାତ୍ ତାଙ୍କ ଧର୍ମ ରାଷ୍ଟ୍ର ଧର୍ମ ହୁଏ, ତେବେ ଭାରତ ଏକ ହିନ୍ଦୁ ରାଷ୍ଟ୍ରରେ ପରିଣତ ହେବ । ଅନ୍ୟ ଧର୍ମ ମତରେ ଲୋକେ ତାହା ମାନିବାକୁ ବାଧ୍ୟ ହେବେ । ନହେଲେ ତାଙ୍କର ଅନ୍ୟ ବାଟ ଖୋଜିବେ ।

ପାକିସ୍ଥାନ ଯଦି ମୁସଲମାନ ରାଷ୍ଟ୍ର ହେଲା, ତେବେ ଭାରତ ହିନ୍ଦୁ ରାଷ୍ଟ୍ର ନହେବ କାହିଁକି ? ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା ଭାରତକୁ ଧର୍ମନିରପେକ୍ଷ ନକରି, ତାକୁ ହିନ୍ଦୁରାଷ୍ଟ୍ର କରି ଗଢ଼ିବା । ଏହା ପରିଷ୍କାର କଥା ।

ଧର୍ମ, ବିଶ୍ୱାସରେ ପ୍ରତିଷ୍ଠିତ ଓ ଏକ ଉପାସନାର ପ୍ରଣାଳୀ । ବିଶ୍ୱାସ ଅନୁସାରେ ଲୋକେ ତାଙ୍କ ବାଟରେ ନିଜର ଅଭିଷ୍ଟ ଶକ୍ତିକୁ ଲୋଡ଼ନ୍ତି । ସେ ବିଶ୍ୱାସ ଓ ଉପାସନା ସାଧାରଣତଃ ପରିବର୍ତ୍ତନ ନାହିଁ । ତଦ୍ୱାରା ମଣିଷ ତା'ର ମାନସିକ ଶାନ୍ତି, ଆଧ୍ୟାତ୍ମିକ ସାନ୍ତ୍ୱନା ପ୍ରାପ୍ତିର ଚେଷ୍ଟା କରେ । କିନ୍ତୁ ଧର୍ମନିରପେକ୍ଷତା ଏକ ରାଜନୀତି, ତାହା ଧର୍ମ ଠାରୁ ଅଲଗା, ପୁରାପୁରି ସମ୍ପର୍କହୀନ । ସବୁ ଧର୍ମର ଊର୍ଦ୍ଧ୍ୱରେ । ପୁରାପୁରି ଏକ ଘୋର ସାଂସାରିକ ଭୌତିକ ବିଷୟ । ତେଣୁ ତାହା ପରିବର୍ତ୍ତନ ସହ ସଦା ଜଡ଼ିତ । ଅଥଚ ଧର୍ମ ବିଶ୍ୱାସରେ ପରିବର୍ତ୍ତନ ନାହିଁ । ଯେତି ବିଶ୍ୱାସରେ ପରିବର୍ତ୍ତନ ଘଟିଲେ, ଏପରିକି ସନ୍ଦେହ ଆସିଲା ମାତ୍ରେ, ସେ ବିଶ୍ୱାସ ତୁଟିଯାଏ । ତାହା ଆଉ ଧର୍ମ ହୋଇ ରହେନାହିଁ । ସେଠି ମଣିଷ ବିଶ୍ୱାସ ଛାଡ଼ି, ପ୍ରଶ୍ନ କରେ—ସବୁର କାରଣ ଖୋଜେ ଓ ସେହି ଅନୁସାରେ ନିଜର ସଂସାର ଗଢ଼ିବାକୁ ବସେ । ଅର୍ଥାତ୍ ବିଜ୍ଞାନ ଆଡ଼କୁ ଗତିକରେ । ଧର୍ମନିରପେକ୍ଷତା ପ୍ରକୃତରେ ସେଇ ପରିବର୍ତ୍ତନ ପ୍ରକ୍ରିୟା ଦ୍ୱାରା ନିୟନ୍ତ୍ରିତ । ତାହା କୌଣସି ବିଶ୍ୱାସ ଦ୍ୱାରା ସ୍ୱୀକୃତ ବା ସୀମିତ ନୁହେଁ; ଧର୍ମର ପ୍ରସ୍ତୁତ ନିୟମ ଦ୍ୱାରା ଚାଳିତ ନୁହେଁ । ସେଠି ସଂସାର ଚାଲେ ପ୍ରାକୃତିକ ନିୟମର ପ୍ରୟୋଗ ଓ ତା'ର ପ୍ରସାରଣ ଦ୍ୱାରା ।

ଅନ୍ୟ ଏକ ଦିଗରୁ, ଗୋଟିଏ (ଧର୍ମ) ପରଲୋକର ବିଷୟ ଓ ସେଥିନେଇ ମଣିଷ ବ୍ୟସ୍ତ ଥିଲାବେଳେ ଅନ୍ୟଟି ହେଲା ଇହଲୋକର କଥା । ରାଜନୀତି ଓ ମଣିଷ ସେଥି ସହିତ ସଂପୃକ୍ତ । ତେଣୁ ଧର୍ମ ଓ ଧର୍ମନିରପେକ୍ଷତା ଦୁହିଁଙ୍କ ଲକ୍ଷ୍ୟ ଓ କ୍ଷେତ୍ର ଭିନ୍ନ ଭିନ୍ନ । ଜଣେ ଯେତେବେଳେ ନିଜର ସୀମା ଡେଇଁ ଅନ୍ୟର କ୍ଷେତ୍ରରେ ପ୍ରବେଶ କରନ୍ତି, ସେତେବେଳେ ସେଇ ଅନଧିକାର ପ୍ରବେଶ ସବୁ ଦ୍ୱନ୍ଦ୍ୱର କାରଣ ହୁଏ ଓ ସଂଘର୍ଷକୁ ଆହ୍ୱାନ କରେ, ତାହାହିଁ ବର୍ତ୍ତମାନ ସଙ୍କଟର ମୂଳକଥା ।

ଫଳରେ, ସାମ୍ପ୍ରଦାୟିକତାବାଦୀ, ମୌଳିକତାବାଦୀମାନେ ତାଙ୍କ ଧର୍ମର କ୍ଷେତ୍ର ଛାଡ଼ି ରାଜନୀତି କ୍ଷେତ୍ରରେ ପ୍ରବେଶ କରନ୍ତି । ମନ୍ଦିର ମସ୍‌ଜିଦରେ ଉପାସନା ଅପେକ୍ଷା ବିଧାନସଭା, ପାର୍ଲିଆମେଣ୍ଟ ତାଙ୍କୁ ଅଧିକ ଆକୃଷ୍ଟ କରେ । ଆଲ୍ଲା ଈଶ୍ୱରଙ୍କ ଆରାଧନା ପରିବର୍ତ୍ତେ କ୍ଷମତାର ଆରାଧନାକୁ ସେମାନେ ମୁକ୍ତିର ମାର୍ଗ ବୋଲି ବିଚାରନ୍ତି

ଭାରତ ଭଳି ଏକ ବହୁ ବିଶ୍ୱାସ ଓ ଧର୍ମର ଦେଶରେ ଧର୍ମନିରପେକ୍ଷତା କିଭଳି କାର୍ଯ୍ୟକାରୀ ହେବ, ତାହା ବହୁ ଚିନ୍ତା ଓ ଆଲୋଚନାର ବିଷୟ ହୋଇଛି । ସେ ବିଗରେ ଜହରଲାଲଙ୍କ ବକ୍ତବ୍ୟ ହେଉଛି, "ତାହା ନିଜକୁ କୌଣସି ଗୋଟିଏ ବିଶ୍ୱାସ ବା ଧର୍ମ ସହ ବାନ୍ଧିଦିଏ ନାହିଁ । ତା'ହେଲେ ତାହା ରାଷ୍ଟ୍ରଧର୍ମ ହୋଇଯିବ ।" ପୁଣି ସେଇ ବହୁ ଧର୍ମର ଦେଶରେ ଜାତୀୟତାକୁ କୌଣସି ଏକ ଧର୍ମ ଦ୍ୱାରା ଚିହ୍ନିତ କରି ଦିଆଯାଇପାରେ, ଯେପରିକି ଏବେ ହିନ୍ଦୁ ହେବାଟାକୁ ହିଁ ଭାରତୀୟ ଜାତୀୟତା (Indian nation ବୋଲି ହିନ୍ଦୁ ସାଂପ୍ରଦାୟିକତାମାନେ ପ୍ରଚାର କରନ୍ତି) । ତେଣୁ ସେଥିପ୍ରତି ସତର୍କ କରାଇ ଦେଇ ସେ କହନ୍ତି ଯେ—"ବହୁ ବିଶ୍ୱାସ, ଧର୍ମର ଦେଶ ଭାରତରେ ପ୍ରକୃତ ଜାତୀୟତା ଧର୍ମନିରପେକ୍ଷତାର ଭିତ୍ତି ବ୍ୟତୀତ, ଗଠିତ ହୋଇ ନପାରେ । ଯେ କୌଣସି ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ନିଶ୍ଚିତ ଭାବେ ଗୋଟାଏ ସଂପ୍ରଦାୟର ଲୋକଙ୍କୁ ବାଦ ଦେବ । ସେଠାରେ ଜାତୀୟତା ବୋଇଲେ ଯାହାହେବ ଉଚିତ, ତା'ଠାରୁ ଅଧିକ ସଙ୍କୀର୍ଣ୍ଣ ଅର୍ଥରେ ତାହା ପ୍ରକାଶ ପାଇବ । ଆମକୁ ସେତେବେଳେ ଆଉ ଭାରତୀୟ ଜାତୀୟତା ବିଚାର କରିବାକୁ ହେବନାହିଁ । ବିଚାର କରିବାକୁ ହେବ— ହିନ୍ଦୁ ଜାତୀୟତା, ମୁସଲମାନ ଜାତୀୟତା, ଶିଖ୍ ଜାତୀୟତା ବା ଖ୍ରୀଷ୍ଟିୟାନ ଜାତୀୟତା ।" ଶେଷରେ ସେ ଜଣାନ୍ତି, "ମୁଁ ପୁନର୍ବାର କହୁଛି, ତାହା ଧର୍ମ ଶୂନ୍ୟତା ନୁହେଁ । କିନ୍ତୁ ତାହା ଧର୍ମକୁ ସାଧାରଣ ରାଜନୈତିକ, ସାମାଜିକ ଜୀବନରୁ ଏକ ଅଲଗା ସ୍ତରରେ ରଖେ । ଏହାଛଡ଼ା ଭାରତରେ ଅନ୍ୟ ଯେ କୌଣସି ଦୃଷ୍ଟିକୋଣର ଅର୍ଥ ହେବ, ଭାରତର ବିଖଣ୍ଡିକରଣ ।"* ଠିକ୍ ଏଇକଥାକୁ ହିଁ ଅନ୍ୟଥା କରିବା ଲାଗି ହିନ୍ଦୁ ସାଂପ୍ରଦାୟିକତାବାଦୀଙ୍କର ସଂଗ୍ରାମ । ସେମାନେ ଚାହାନ୍ତି ଧର୍ମ ଓ ରାଜନୀତି ଅଲଗା ନହୋଇ, ଧର୍ମହିଁ ହେଉ ରାଜନୀତି । ଧର୍ମର ରାଜନୀତି ଚାଲୁ । ଆଉ ସେହି ରାଜନୀତି ହେଉ ହିନ୍ଦୁ ଧର୍ମର ନୀତି ।

ଧର୍ମ, ଏଇଟି ସଂସ୍କୃତ ଶବ୍ଦ । ହେଲେ ବି ତାହା ପ୍ରାକୃତ ଧମ୍ମ ଶବ୍ଦରୁ ଆସିଛି । ସେଇ ଧର୍ମ ବା ଧମ୍ମ ହେଲା ଅଶୋକଙ୍କ ଶାସନର ମୂଳନୀତି, ଯାହାର ଅର୍ଥ ନ୍ୟାୟପରାୟଣତା । ବର୍ତ୍ତମାନର ଅର୍ଥରେ ତାହା କୌଣସି ସଙ୍ଗଠିତ ବା ପ୍ରତିଷ୍ଠିତ ଧର୍ମ ନୁହେଁ, ଯାହାକୁ କହନ୍ତି ରିଲିଜନ । ତେଣୁ ତାହା କୌଣସି ଆନୁଷ୍ଠାନିକ ଧର୍ମର ସଙ୍କୀର୍ଣ୍ଣ ଗଣ୍ଡି ଭିତରେ ଆବଦ୍ଧ ନୁହେଁ । ସେଇ ନ୍ୟାୟପରାୟଣତାର ସାର୍ବଜନୀନ ନିୟମ ହେଉଛି ଧର୍ମ, ଯାହାକୁ ଅଶୋକ ପ୍ରଚାର କରନ୍ତି, ତାହା ହେଉଛି ଭାରତର ଐତିହ୍ୟ । ସେଇ ନ୍ୟାୟପରାୟଣତାର ପ୍ରତୀକ ରୂପେ

---

* Experts from Forward to Dharma Nirapekhya Raj. Rghunath Sing. 1961

ଆମେ ଅଶୋକ ଚକ୍ରକୁ ଆମ ମତାଦର୍ଶରେ ବନ୍ଧନ କରି ରଖିଛୁ । ହିନ୍ଦୁ ସାଂପ୍ରଦାୟିକତାବାଦୀଗଣ ଠିକ୍ ସେଇ ଐତିହ୍ୟକୁ ଗଢ଼ିବାକୁ ଚାହାନ୍ତି । ହିନ୍ଦୁ ଧର୍ମ ନାଁରେ କାର୍ଯ୍ୟତଃ ସେମାନେ ଚାହାନ୍ତି ସେଇ ବର୍ଣ୍ଣାଶ୍ରମ ଧର୍ମର, ବ୍ରାହ୍ମଣ୍ୟବାଦର ପ୍ରତିଷ୍ଠା, ଯାହାକୁ ବ୍ୟାଖ୍ୟା କରିବାରେ ସେମାନେ *ପଶ୍ଚାତ୍ପଦ ।

ହିନ୍ଦୁ ଧର୍ମ ତ ଦୂରର କଥା, କାରଣ ଶତାବ୍ଦୀ ଆଗରୁ ହିନ୍ଦୁ ବୋଲି କୌଣସି ଶବ୍ଦ ନଥିଲା । ଆରବୀୟମାନେ ସିନ୍ଧୁ ଅଞ୍ଚଳକୁ ହିନ୍ଦ୍ କହନ୍ତି ନା ହିନ୍ଦୁ ଶବ୍ଦ ନ ଆସେ । ସେମିତି 'ଇଣ୍ଡସ'ରୁ ଇଣ୍ଡିଆର ଉତ୍ପତ୍ତି । ସେଥିଯୋଗୁ କୌଣସି ବୈଦିକ ସାହିତ୍ୟ, ରାମାୟଣ, ମହାଭାରତ ଶାସ୍ତ୍ର, ପୁରାଣ ଆଦି କେଉଁଠି ହେଲେ ହିନ୍ଦୁ ଶବ୍ଦର ଉଲ୍ଲେଖ ନାହିଁ । ବିଭିନ୍ନ ମତ, ପନ୍ଥା ବିଶ୍ୱାସ ଓ ଧାରଣାର ଲୋକ ଅଛନ୍ତି କିନ୍ତୁ ହିନ୍ଦୁ ଧର୍ମ ବୋଲି କୌଣସି ନିଦର୍ଶନ ନାହିଁ । କାରଣ, ହିନ୍ଦୁ ଏକ ଧର୍ମୀୟ ଧାରଣା ନୁହେଁ, ତାହା ଏକ ଆଞ୍ଚଳିକ ଧାରଣା । ସିନ୍ଧୁ ଅଞ୍ଚଳର ବାସିନ୍ଦା ହେଲେ ହିନ୍ଦୁ । ସେହି ଗୋଟାଏ ଅଞ୍ଚଳରେ ମଧ୍ୟ ଏକାଧିକ ଧର୍ମ ଥାଇପାରେ । ଭାରତହିଁ ତାହାର ଦୃଷ୍ଟାନ୍ତ । ଆଗେ ୟୁରୋପରେ ଭାରତ ବୋଇଲେ ହିନ୍ଦୁସ୍ଥାନ, ତା'ର ବାସିନ୍ଦାମାନେ ହେଲେ ହିନ୍ଦୁ, ମାର୍କସ୍ ମଧ୍ୟ ତାକୁ ହିନ୍ଦୁସ୍ଥାନ ବୋଲି ଉଲ୍ଲେଖ କରିଛନ୍ତି । ସାର୍ ସୟଦ ଅହମଦ ଖାଁ ସେଇଭଳି ନିଜକୁ ହିନ୍ଦୁ ବୋଲି କହୁଥିଲେ । ହିନ୍ଦୁ ବା ଆର୍ଯ୍ୟ ବୋଲି କହି ଯେଉଁ ଗର୍ବ କରାଯାଏନ୍ତି ତାହା ପ୍ରକୃତରେ ହେଉଛି ଭାରତୀୟ ; ଭାରତର ମହାମାନବର ସାଗର ଭିତରୁ ତା'ର ଜନ୍ମ । ଭାଷାବିତ୍ ମହାପଣ୍ଡିତ ସୁନୀତି ଚାଟାର୍ଜୀଙ୍କ ଭାଷାରେ "…ଆମ ଭାରତୀୟ ଢଙ୍ଗରେ କହିଲେ ଭାରତୀୟ ସଂସ୍କୃତି ଓ ଧର୍ମ ଟଙ୍କାକେ ବାରଣୁ ଚଉଦଅଣା ଅଣଆର୍ଯ୍ୟ ସମ୍ଭୂତ" …Talking Indian way that 12 to 14 annas a rupee in Indian Culture and Religion are non-Aryan Origin (Selected Papers, P-59., P. P. H)

ଆଗେ, ସାଧାରଣ ଲୋକଙ୍କଲାଗି ଶାସ୍ତ୍ର ଅଧ୍ୟୟନ ଥିଲା ନିଷେଧ, ତାହା ଥିଲା ବ୍ରାହ୍ମଣଙ୍କର ଏକଚାଟିଆ ଅଧିକାର । ତେଣୁ ସାଧାରଣତଃ ଶାସ୍ତ୍ର, ପୁରାଣ, ତା'ର ବ୍ୟାଖ୍ୟା ବିଶ୍ଳେଷଣ, ତା'ର ପ୍ରଚାର ଆଉ ପ୍ରତିଷ୍ଠା, ସେମାନଙ୍କ କୃତ । ତେଣୁ ସେସବୁ ଉପରେ ବ୍ରାହ୍ମଣ୍ୟବାଦର ଛାପ ବସିଛି । ବର୍ଣ୍ଣାଶ୍ରମ ଧର୍ମ ଜରିଆରେ ପ୍ରତ୍ୟେକ କ୍ଷେତ୍ରରେ ବ୍ରାହ୍ମଣ୍ୟବାଦର ଆଧିପତ୍ୟ । ତା' ସାଙ୍ଗକୁ ନାନା ପ୍ରକାର ଅନ୍ଧବିଶ୍ୱାସ, କୁସଂସ୍କାର ଓ କିମ୍ବଦନ୍ତୀ ଦ୍ୱାରା ସେଇ ବାଧ୍ୟ ବ୍ୟବସ୍ଥାକୁ ଏପରି ବଦ୍ଧମୂଳ କରି ଦିଆଯାଇଛି ଯେ, ସେଥିରୁ ସାଧାରଣ ଲୋକର ମୁକ୍ତି ନାହିଁ । ସେ ବିଷୟରେ ପ୍ରଶ୍ନ ଉଠିଲେ, ଧର୍ମ ବିପନ୍ନ ହେଲା ବୋଲି ଡାକପଡ଼େ । ଯେଉଁମାନଙ୍କ ମୁକ୍ତି ଲାଗି

ତାହା ଉଦ୍ଦିଷ୍ଟ, ସେମାନେ ଧର୍ମଛଡ଼ା ହେବା ଭୟରେ ତା'ର ବିରୋଧ କରନ୍ତୁ । ଇହଲୋକ, ପରଲୋକରେ ମୁକ୍ତିର ଏକମାତ୍ର ପଥ ହେଲା ବ୍ରାହ୍ମଣ୍ୟବାଦ ମାର୍ଗରେ ଗତିକରିବା । ଆଉ ଧର୍ମ ନାମରେ ସବୁ କିଛି ପବିତ୍ର ଓ କରଣୀୟ । ସେଇ ଧର୍ମ ନାମରେ ସ୍ୱୟଂ ଜଗନ୍ନାଥଙ୍କୁ (ନୀଳମାଧବ) ଆଦିବାସୀ ଘରୁ ଚୋରି କରାଯାଏ । ଲୁହାଯାଏ, ତାହା ତାଙ୍କର ସ୍ୱପ୍ନାଦେଶ । ତେଣୁ ତାହା ଚୋରି ନୁହେଁ, ଧର୍ମକାର୍ଯ୍ୟ । ସେହିପରି ରାତି ଅଧରେ ଚୋରାରେ ମସ୍‌ଜିଦ ଭିତରେ ରାମ ମୂର୍ତ୍ତିକୁ ରଖାଯାଏ, ପ୍ରଚାର ହୁଏ, ରହସ୍ୟଜନକ ଭାବରେ ନିଜ ଜନ୍ମ ସ୍ଥାନରେ ସ୍ୱୟଂ ରାମଙ୍କ ଆବିର୍ଭାବ ।

ସେଇ 'ବିଶ୍ୱାସ' ହିଁ ତା'ର ସର୍ବଶ୍ରେଷ୍ଠ ପ୍ରମାଣ । ସାମ୍ପ୍ରଦାୟିକତାବାଦ, ସେ ଦିଗରେ ଇତିହାସ ଓ ପ୍ରତ୍ନତତ୍ତ୍ୱ ଆଦି କୌଣସି ସାକ୍ଷ୍ୟ ପ୍ରମାଣ —ମାନେ ନାହିଁ । ଆଇନ, ଅଦାଲତ ବିଚାରକୁ ଖାତିର କରେ ନାହିଁ । ଭାରତୀୟ ସଂସ୍କୃତି ପରମ୍ପରାକୁ ଉପେକ୍ଷା କରେ । ଜାତୀୟ ସଂହତି ଓ ରାଷ୍ଟ୍ରୀୟ ସମ୍ବିଧାନକୁ ପାଦରେ ଦଳିଦେଇ ପାରେ । ଏସବୁ ଗୋଟିଏ ଲକ୍ଷ୍ୟ ଦିଗରେ ଉଦ୍ଦିଷ୍ଟ—ସେହି ବିଶ୍ୱାସର ଭିତ୍ତିରେ ହିନ୍ଦୁ ରାଷ୍ଟ୍ରର ଗଠନ । ଅନ୍ୟ ଧର୍ମୀୟ ରାଷ୍ଟ୍ର ଭଳି ସେହି ରାଷ୍ଟ୍ର ହିନ୍ଦୁ ବିଧିବିଧାନ, ଆଚାର, ବ୍ୟବହାର ଓ ନୀତିନିୟମ ଅନୁଯାୟୀ ପରିଚାଳିତ ହେବ । ତା' ନହେଲେ ହିନ୍ଦୁ ରାଷ୍ଟ୍ରର ନିଜସ୍ୱ ଚରିତ୍ର ରହିବ କିପରି ? ତାହା କରିବା ଅର୍ଥ, ହିନ୍ଦୁ ଧର୍ମର ନିୟାମକ 'ମନୁ' ଓ ମନୁସ୍ମୃତିକୁ ଅନୁସରଣ କରିବା, ଅଥଚ ସେହିସବୁ ସଂହିତାରେ ହିନ୍ଦୁ ଧର୍ମ ବୋଲି କୌଣସି ଶବ୍ଦ ନାହିଁ, ଯାହା ଅଛି ତାହା ବର୍ଣ୍ଣାଶ୍ରମ ଧର୍ମ ତା'ର ପ୍ରଦର୍ଶିତ ନୀତି ହେବ ହିନ୍ଦୁ ରାଷ୍ଟ୍ରର ବିଧାନ । ଯାହାର ମୂଳକଥା ହେଲା ଅର୍ଥି । ସବୁଠି ପବିତ୍ର ହେଲାଭଳି ବ୍ରାହ୍ମଣ (ବିଦ୍ୱାନ ବା ମୂର୍ଖ ହେଉ) ସବୁଠାରେ ପୂଜ୍ୟ । ବ୍ରାହ୍ମଣକୁ ଗାଳିଦେଲେ ତା' ଜିଭ କାଟିଦେବ । ବ୍ରାହ୍ମଣ ଯେତେ ପାପ କର୍ମ କରୁ ତାକୁ ମାରିବ ନାହିଁ । ଅକ୍ଷତ ଶରୀରରେ ସମସ୍ତ ଧନ ସହିତ ତାକୁ ରାଜ୍ୟରୁ ବିଦା କରିଦେବ । *(ମନୁସଂହିତା ୯.୩୧୭, ୩୧୯; ୮.୨୭୦; ୮.୩୮୦) କାରଣ ସେମାନେ ହେଲେ ସମାଜର କର୍ତ୍ତା ଓ ନିୟନ୍ତା ।

---

* ଅବିଦ୍ୱାଂଶ୍ଚୈବ ବିଦ୍ୱାଂଶ୍ଚ ବ୍ରାହ୍ମଣୋ ଦୈବତଂ ମହତ୍ ।
ପ୍ରଣୀତଶ୍ଚାପ୍ରଣୀତଶ୍ଚ ଯଥାଗ୍ନି ର୍ଦୈବତଂ ମହତ୍ ॥ (୯।୩୧୭)
ଏବଂ ଯଦ୍ୟପ୍ୟନିଷ୍ଟେଷୁ ବର୍ତ୍ତନ୍ତେ ସର୍ବକର୍ମସୁ ।
ସର୍ବଥା ବ୍ରାହ୍ମଣାଃ ପୂଜ୍ୟାଃ ପରମଂ ଦୈବତଂ ହି ତତ୍ । (୯।୩୧୯)
ଏକଜାତି ର୍ଦ୍ୱିଜାତୀଂସ୍ତୁ ବାଚା ଦାରୁଣୟା କ୍ଷିପନ୍ ।
ଜିହ୍ୱାୟାଃ ପ୍ରାପ୍ନୁୟାଚ୍ଛେଦଂ ଜଘନ୍ୟପ୍ରଭବୋ ହି ସଃ ॥ (୮।୨୭୦)
ନ ଜାତୁ ବ୍ରାହ୍ମଣଂ ହନ୍ୟାତ୍ସର୍ବପାପେଷ୍ୱପି ସ୍ଥିତମ୍ ।
ରାଷ୍ଟ୍ରାଦେନଂ ବହିଃ କୁର୍ଯ୍ୟାତ୍ସମଗ୍ରଧନମକ୍ଷତମ୍ ॥ (୮।୩୮୦

ଅତଏବ, ହିନ୍ଦୁ ରାଷ୍ଟ୍ରର ପ୍ରତିଷ୍ଠା ହେଉଛି ସେହି ବର୍ଣ୍ଣାଶ୍ରମର ପ୍ରତିଷ୍ଠା । ଜାତି ବା ଜନ୍ମ ଅନୁସାରେ ମଣିଷର ସ୍ଥାନ, କର୍ମ ଓ ଭାଗ୍ୟର ବିଚାର – ଗଣତନ୍ତ୍ରର ବିଲୋପ । ହିନ୍ଦୁ ରାଷ୍ଟ୍ରରେ ଯଦି କିଏ ସବୁଠାରୁ ପଦଦଳିତ ହେବେ, ସେମାନେ ଅନ୍ୟ ଧର୍ମର ଲୋକ କୁହନ୍ତି, – ସେମାନେ ସେଇ ହିନ୍ଦୁ ଧର୍ମର ଦଳିତ ଲୋକେ, ଦେଶରେ ଯେଉଁମାନଙ୍କ ସଂଖ୍ୟା ସର୍ବାଧିକ ।

ଆଜି ଯଦି ବିଜେପିର ସେଇ ହିନ୍ଦୁତ୍ୱର ମୁଖାକୁ କେହି ଖୋଲିଦିଏ, ସଂଘ ପରିବାରର ପ୍ରକୃତ ରୂପ ଓ ଉଦ୍ଦେଶ୍ୟକୁ ପ୍ରକାଶ କରୁଥାଏ, ସିଏ ଅନ୍ୟ କେହି ନୁହଁନ୍ତି, ସେଇ ହିନ୍ଦୁ ଧର୍ମର ଅଦ୍ୱିତୀୟ ପୁରୁଷ—ସ୍ୱୟଂ ସ୍ୱାମୀ ବିବେକାନନ୍ଦ । ବିବେକାନନ୍ଦଙ୍କ ମତରେ ସବୁଠୁ ବଡ଼ ଜାତୀୟ ପାପ(Greatest National Sin) ଲୋକକୁ ଉପେକ୍ଷା କରିବା । ସେଥିଲାଗି ସେ ଦୁଇଟି ଶକ୍ତିକୁ ଦାୟୀ କରିଛନ୍ତି । ଗୋଟିଏ ହେଲା ବ୍ରାହ୍ମଣ୍ୟ ଶକ୍ତି (Priestly Power), ଅନ୍ୟଟି ବିଦେଶୀ ଆଧିପତ୍ୟ । ଯୁଗଯୁଗ ଧରି ତାହା ଦରିଦ୍ର ଲୋକଙ୍କୁ ପଦଦଳିତ କରି ରଖିଛି । ତେଣୁ ଲୋକ ସାଧାରଣଙ୍କ ପାଇଁ "ଉତ୍ତମ ଖାଦ୍ୟ, ଉତ୍ତମ ଶିକ୍ଷା, ଉତ୍ତମ ଯତ୍ନ" ( Wellfed, well educated well cared) ର ବ୍ୟବସ୍ଥା ନ ହେବା ପର୍ଯ୍ୟନ୍ତ ଯେତେ ରାଜନୀତି କଲେ ବି କିଛି ଅର୍ଥ ନାହିଁ ।

ଏବେ ବିଦେଶୀ ଆଧିପତ୍ୟ ଯାଇଛି ; କିନ୍ତୁ ରହିଛି ବ୍ରାହ୍ମଣ୍ୟବାଦର ଆଧିପତ୍ୟ । ତାହା ଆତ୍ମା, ସ୍ୱର୍ଗ ଓ ଧର୍ମର ଡାକ ଦେଇ ଲୋକଙ୍କ ଦୃଷ୍ଟିକୁ, ତାଙ୍କ ଜୀବନର ସମସ୍ୟାରୁ ଏଡ଼ାଇ ଦେବାର ଚେଷ୍ଟା କରେ । ତାଙ୍କର ଏକତାକୁ ବିଭକ୍ତ ଓ ଚେତନାକୁ ବିଭ୍ରାନ୍ତ କରିବା ହେଲା ତା'ର ଜାତୀୟ ଉଦ୍ଦେଶ୍ୟ ।

ସ୍ୱାମୀ ବିବେକାନନ୍ଦ ଈଶ୍ୱରଙ୍କୁ ମଧ୍ୟ, ଲୋକଙ୍କର ସ୍ୱାର୍ଥର ନିକଟରେ ବିଚାର କରନ୍ତି । ସେ କହନ୍ତି, "ଯେଉଁ ଈଶ୍ୱର ଏଠାରେ ଆମକୁ ରୁଟି ଦେଇ ନ ପାରି ସ୍ୱର୍ଗରେ ଚିରନ୍ତନ ଆନନ୍ଦ ପ୍ରଦାନ କରନ୍ତି, ସେପରି ଈଶ୍ୱରରେ ମୁଁ ବିଶ୍ୱାସ କରେ ନାହିଁ ।"(I do not believe in God who can not give us bread here, giving eternal bliss in heaven) ଅଥଚ ଆମର ବର୍ତ୍ତମାନର ଧର୍ମବାଦୀଗଣ ଠିକ୍ ସେଇ ଧର୍ମରେ ବିଶ୍ୱାସ କରନ୍ତି ଯାହା ଏଠାରେ ରୁଟି ନ ଦେଇ ସ୍ୱର୍ଗରେ ମୁକ୍ତି ଦିଏ । ସେମାନେ କେବଳ ତାକୁ ପ୍ରଚାର କରନ୍ତି ନାହିଁ, କାର୍ଯ୍ୟ ଦ୍ୱାରା ତାକୁ ପ୍ରତିପାଦିତ କରିଥାଆନ୍ତି । ଏପ୍ରକାରର ଧର୍ମପ୍ରୀତି, ଏଇପରି ହିନ୍ଦୁତ୍ୱ ଓ ସ୍ୱାମୀଜୀଙ୍କର ଦୃଷ୍ଟିକୋଣ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ବିଜେପି ରେ ହିନ୍ଦୁତ୍ୱ କହେ, ତା'ର ଧର୍ମ ହିଁ ସର୍ବଶ୍ରେଷ୍ଠ । ତାକୁ

ଅନ୍ୟମାନେ ସମ୍ମାନଦେବା, ତାକୁ ମାନି ଚଳିବା ଉଚିତ । ତା ନ ହେଲେ କୋର ପୂର୍ବକ ମନେଇବାକୁ ହେବ । ଠିକ୍ ତାହାହିଁ ହେଲା ସବୁ ସାଂପ୍ରଦାୟିକ ଉଗ୍ରତା ଓ ସଂଘର୍ଷର ମୂଳ ।

ତା'ର ପ୍ରତିକାର ସ୍ୱରୂପ ଅନ୍ୟ ଧର୍ମ ପ୍ରତି ସହନଶୀଳତା କଥା ପ୍ରସ୍ତୁତ କରାଯାଏ । କୁହାଯାଏ ତାହା ଭାରତର ପରମ୍ପରା ଓ ଚିରାଚରିତ ଚରିତ୍ର । ବହୁ ଧର୍ମ ମତ ବିଶ୍ୱାସର ଲୋକ ଯୁଗଯୁଗ ଧରି ଏଠି ରହି ଆସିଛନ୍ତି । ତାକୁହିଁ ଅନୁସରଣ କରିବାକୁ ହେବ । ବିବେକାନନ୍ଦ କିନ୍ତୁ ସେତିକରେ ସୀମିତ ନଥିଲେ । ସେ ଆହୁରି ଆଗକୁ ଯାଇ ସବୁ ଧର୍ମ ପ୍ରତି "ସ୍ୱୀକୃତି" ଜଣାନ୍ତି । "ଯଦି ତମେ ହିନ୍ଦୁ ହୋଇ ଜନ୍ମ ହୋଇଛ, ତୁମେ ଭଲ ହିନ୍ଦୁ ହୁଅ । ମୁସଲମାନ ହୋଇ ଜନ୍ମ ହୋଇଛ, ଭଲ ମୁସଲମାନ ହୁଅ । ଖ୍ରୀଷ୍ଟିୟାନ ହୋଇ ଜନ୍ମ ହୋଇଛ, ଭଲ ଖ୍ରୀଷ୍ଟିୟାନ ହୁଅ······ସବୁ ଧର୍ମର ସାରମର୍ମ ସମାନ—"ଏକତ୍ୱ" (Oneness) ପ୍ରତ୍ୟେକ ନିଜକୁ ଯେମିତିଭଳି ତାକୁ ବାଛିଥାଆନ୍ତି । ତେଣୁ ବିବେକାନନ୍ଦ ଧର୍ମରେ ଶତ୍ରୁତା, ବିଦ୍ୱେଷ ଓ ସଂଘର୍ଷକୁ ଦେଖନ୍ତି ନାହିଁ, ଦେଖନ୍ତି ମିଳନର ସେତୁ । ବିବେକାନନ୍ଦଙ୍କ ଭାରତ, ବିଶ୍ୱକୁ ଧର୍ମରେ "ସହନଶୀଳତା ଓ ସ୍ୱୀକୃତି"ର ଶିକ୍ଷାଦିଏ ।

ସ୍ୱାମୀଜୀ ଭାରତ କ୍ଷେତ୍ରରେ ତାଙ୍କର ସେହି ଶିକ୍ଷାର ପ୍ରୟୋଗକୁ ଦର୍ଶାଇଥାନ୍ତି । କହନ୍ତି "······ଆମ ନିଜର ମାତୃଭୂମି ହେଉଛି ଦୁଇଟି ମହାନ୍ ବ୍ୟବସ୍ଥା ହିନ୍ଦୁ ଓ ଇସଲାମ୍‌ର ସଙ୍ଗମ ସ୍ଥଳ—ବେଦାନ୍ତ ମସ୍ତିଷ୍କ ଓ ଇସଲାମ୍ ଶରୀର ହେଉଛି ଏକମାତ୍ର ଆଶା । ମୁଁ ମୋର ମାନସ ଚକ୍ଷୁରେ ପରିପୂର୍ଣ୍ଣ ଭାରତକୁ ଦେଖେ । ତାହା ସେହି ବେଦାନ୍ତ ମସ୍ତିଷ୍କ ଓ ଇସଲାମ୍ ଶରୀରକୁ ଧରି ସଂଘର୍ଷର ବିଶୃଙ୍ଖଳା ଓ ଅରାଜକତା ଭିତରୁ ଅପରାଜେୟ ଓ ଗୌରବମଣ୍ଡିତ ହୋଇ ଆତ୍ମପ୍ରକାଶ କରେ ।"*

ବର୍ତ୍ତମାନର ସଂଘ ପରିବାର—ବି. ଜେ. ପି, ଆର୍. ଏସ୍. ଏସ୍., ବିଶ୍ୱହିନ୍ଦୁ ପରିଷଦ, ବଜରଙ୍ଗ ଦଳ ଓ ଶିବସେନା ଆଦିଙ୍କ ଦୃଷ୍ଟିକୋଣ

---

* For our Motherland a junction of the two great systems Hinduism and Islam—Vedant brain and an Islam body-is the only hope. I see in my minds eye the future perfect India arising out of this chaos and strife glorious and invincible with Vedant brain and Islam body. ( Voi. IV, 14,6)

ବିବେକାନନ୍ଦର ମତ୍ୱକ କେବଳ ଫରକ୍ ନୁହେଁ ତା'ର ସମ୍ପୂର୍ଣ୍ଣ ବିରୋଧୀ । ସଂଘ ପରିବାର ଭାରତର ପୁନରୁତ୍ଥାନ ଓ ପୂର୍ଣ୍ଣତା ପ୍ରାପ୍ତିର ପଥ ହିନ୍ଦୁରାଷ୍ଟ୍ର ଗଠନରେ ଦେଖିଲା ବେଳେ ସ୍ୱାମୀଜୀ ଦେଖନ୍ତି, ହିନ୍ଦୁ ମୁସଲମାନଙ୍କ ମିଳନରେ – କେବଳ ଦୈହିକ ସ୍ତରରେ ନୁହେଁ, ବୌଦ୍ଧିକ, ଆଧ୍ୟାତ୍ମିକ ଓ ମାନସିକ କ୍ଷେତ୍ରରେ ।

ଆଜି ଭାରତରେ ଏତେ ସଂଖ୍ୟାରେ ମୁସଲମାନ କାହିଁକି ? କୁହାଯାଏ, ହିନ୍ଦୁଙ୍କୁ ତଲୱାର ଜୋରରେ ବଳପୂର୍ବକ ମୁସଲମାନ କରାଯାଇଛି । ହିନ୍ଦୁମାନେ ମୁସଲମାନ ହୋଇଛନ୍ତି ଠିକ୍ । କିନ୍ତୁ କାହିଁକି ? ସ୍ୱାମୀଜୀଙ୍କର ମତ ଠିକ୍ ତା'ର ଓଲଟା । ସେ ଏଥିଲାଗି ସେହି ହିନ୍ଦୁଙ୍କୁହିଁ ଦାୟୀ କରନ୍ତି, କାରଣ ଦରିଦ୍ର, ଦଳିତ ଲୋକଙ୍କ ଲାଗି ଭାରତରେ ମୁସଲମାନ ଆଧିପତ୍ୟ ଗୋଟାଏ ମୁକ୍ତି ସ୍ୱରୂପ ଦେଖାଦେଲା । ସେଥିଯୋଗୁ ଆମ ଲୋକଙ୍କ ମଧ୍ୟରୁ ପାଞ୍ଚଭାଗରୁ ଭାଗେ ମୁସଲମାନ ହୋଇଗଲେ । ଖଣ୍ଡା ଯେ ସବୁକିଛି କରିଛି ତାହା ନୁହେଁ । (୦)

ପୁଣି ସେ ଆଉ ଠାଏଁ କହନ୍ତି, "ଭାରତରେ ଦରିଦ୍ର ଲୋକଙ୍କ ମଧ୍ୟରେ ଏତେ ଅଧିକ ସଂଖ୍ୟକ ମୁସଲମାନ କାହିଁକି ? ସେମାନେ ଖଣ୍ଡାଦ୍ୱାରା ଧର୍ମାନ୍ତରିତ ହୋଇଛନ୍ତି କହିବାରେ କିଛି ଅର୍ଥ ନାହିଁ । ଜମିଦାର ବ୍ରାହ୍ମଣ୍ୟବାଦ କବଳରୁ ମୁକ୍ତି ଲଭିବା ଲାଗି ତାହା ହୋଇଛି । ଫଳରେ ବଙ୍ଗଳା ଚାଷୀମାନଙ୍କ ମଧ୍ୟରେ ହିନ୍ଦୁଙ୍କ ତୁଳନାରେ ମୁସଲମାନଙ୍କ ସଂଖ୍ୟା ଏତେ ଅଧିକ ।" *

ଏଥିରୁ ଜଣାଯାଏ, ହିନ୍ଦୁ ଧର୍ମ ନାମରେ ବ୍ରାହ୍ମଣ୍ୟବାଦ ଆଧିପତ୍ୟ ଶୂଦ୍ର ଦରିଦ୍ର ହରିଜନଙ୍କ ଜୀବନକୁ ଅତିଷ୍ଠ କରିଦେଇଛି । ତାହାହିଁ ସେମାନଙ୍କୁ ମୁସଲମାନ ହେବାକୁ ବାଧ୍ୟ କରିଛି । ସେହି ବ୍ରାହ୍ମଣ୍ୟବାଦ କେବଳ ମୁସଲମାନଙ୍କ

---

(୦) Mohemmedan conquest of India came as a salvation to the down-trodden, to the poor. That is why one-fifth of the people became Mohemmedan. It was not soward that did it all. (Vol. III. P290)

*Why amongst the poor of India so many Mohemmedans. It is nonsense to say that they are converted by soward. It is to gain their liberty from Zamindars and from the priests and a consequence you find in Bengal more Mohemmedans than Hindus amongst cultivators (Vol: VIII: P-339)

ସଂଖ୍ୟା ବୃଦ୍ଧି କର ନାହିଁ, ବାହାରରୁ ଆଉ କାହାକୁ ହିନ୍ଦୁ ଧର୍ମ ଭିତରକୁ ଆସିବାକୁ ମଧ୍ୟ ଦେଇନାହିଁ । ତା'ର ଏବେ ସେହି ହିନ୍ଦୁ ରାଷ୍ଟ୍ର ଗଠନର ଆହ୍ୱାନ, ଭାରତକୁ ଟୁକୁଡ଼ାକୁଡ଼ାର ବଭକ୍ତ କରବାର ପଥ଼ଇନ୍ଦ୍ର କରଦଏ ।

ସ୍ୱାମୀଜୀଙ୍କର ସେହି ପରିକଳ୍ପିତ ଜାତିତ ଉତ୍ତିଷ୍ଠିତ ଭାରତ, ଏବଂ ବର୍ତ୍ତମାନ ସାଂପ୍ରଦାୟିକତାବାଦୀଙ୍କ ହିନ୍ଦୁ ରାଷ୍ଟ୍ର –ଏ ଦୁଇ ପରସ୍ପର ବରୋଧୀ ଧାରଣା । କାରଣ ସ୍ୱାମୀଜୀ କହନ୍ତି "ସମୟ ଆସିବ ଯେତେବେଳେ ଶୂଦ୍ର ଶ୍ରେଣୀ ତାଙ୍କର ଶୂଦ୍ରତ୍ୱକୁ ଧରି ଜାଗି ଉଠିବେ ···ପ୍ରତ୍ୟେକ ସମାଜରେ ଅଖଣ୍ଡ ପ୍ରାଧାନ୍ୟ ଲାଭ କରିବେ । ସେଇ ନୂତନ ପ୍ରଭାତର ଆଲୋକ, ପାଶ୍ଚାତ୍ୟ ଦୁନିଆ ଉପରେ ଧୀରେ ଧୀରେ ପଡ଼ିବାକୁ ଆରମ୍ଭ କଲଣି । ସେଇ ନୂତନ ଘଟଣାବଳୀର ଅନ୍ତିମ ପ୍ରଶ୍ନ କ'ଣ ହେବ ତାହା ଭାବିବାକୁ ଚନ୍ତାଶୀଳ ବ୍ୟକ୍ତିମାନଙ୍କର ବୃଦ୍ଧି ପାଏ ନାହିଁ । *

ସେ ପୁଣି ଅନ୍ୟତ୍ର କହନ୍ତି, "ଭାରତରେ ମଧ୍ୟ ସେହି ଜାଗରଣର ଆଭାସ ଦେଖାଦେଲଣି । ଆଜିକାଲି ନିମ୍ନ ଶ୍ରେଣୀର ଲୋକମାନଙ୍କ ଧର୍ମଘଟ ସଂଖ୍ୟା ହେଉଛି ତା'ର ପ୍ରମାଣ । ଉଚ୍ଚଶ୍ରେଣୀର ଲୋକେ ଯେତେ ଚେଷ୍ଟା କଲେ ବି ତଳଶ୍ରେଣୀର ଲୋକଙ୍କୁ ଅଧିକକାଳ ଦମନ କରି ରଖିବାରେ ସମର୍ଥ ହେବେ ନାହିଁ ।" (୦)

ସ୍ୱାମୀଜୀଙ୍କର ସେହି ଶୂଦ୍ର ବା ନିମ୍ନ ଶ୍ରେଣୀର ଲୋକ ହେଲେ ସମାଜର ଦଳିତ, ଶୋଷିତ ଅତ୍ୟାଚାରିତ ଲୋକେ । ଦରିଦ୍ରଙ୍କ ପ୍ରତି ଦୟା, ଦାନ, ଧର୍ମଦ୍ୱାରା ଅନ୍ୟମାନଙ୍କ ଭଳି କେବଳ ପୁଣ୍ୟ ଅର୍ଜନର ବାଣୀ ସେ ଶୁଣାଇ ଚୁପ ରହି

---

* A time will come when there will be rising of the shudra class, with their shudrahood······will gain absolute supremacy in every society. The glow of the dawn of the new power has already begun to bear upon slowly upon the western world and thoughtfulls are at their wits end to reflect at on final issue of the fresh phenomenona.

(O) Signs of the awakening has shown themselves in India too as the evidence from the number of strikes among the lower classes now a days. The upper class will be no longer be able to repress the lower try ever so much. (Vol. VII, P-147)

ନାହାନ୍ତି, ତାଙ୍କର ଲକ୍ଷ୍ୟ ତା'ର ମୌଳିକ ସମାଧାନ । ତାଙ୍କର ବକ୍ତବ୍ୟ ହେଉଛି, "ମୁଁ ଜଣେ ସମାଜବାଦୀ, ତା'ର କାରଣ ନୁହେଁ ଯେ ତାହା ଏକ ନିଖୁଣ ପୂର୍ଣ୍ଣାଙ୍ଗ ବ୍ୟବସ୍ଥା, କିନ୍ତୁ ଜମାରୁ ଖଣ୍ଡେ ରୁଟି ନଥିବା ଅପେକ୍ଷା ଅଧା ରୁଟିଖଣ୍ଡକ ଶ୍ରେୟସ୍କର । ଅନ୍ୟ ବ୍ୟବସ୍ଥା ସବୁ ପରୀକ୍ଷା ହୋଇ ଅଭାବଗ୍ରସ୍ତ ବୋଲି ପ୍ରମାଣିତ ।"*

ବର୍ତ୍ତମାନର ମଣିଷର ଦୁଃଖର କାରଣ ଆଲୋଚନା କରି ସ୍ୱାମୀଜୀ କହନ୍ତି, "ଅଜ୍ଞତା, ଅସାମ୍ୟ ଓ କାମନା —ଏ ତିନୋଟି ହେଲା ମଣିଷର ଦୁଃଖର କାରଣ । ପ୍ରତ୍ୟେକଟି ନିଜତ ଭାବେ ଅନ୍ୟକୁ ଅନୁସରଣ କରନ୍ତି । ଜଣେ କାହିଁକି ନିଜକୁ ଅନ୍ୟଠାରୁ ଉଚ୍ଚ ବୋଲି ମନେ କରେ ? କିନ୍ତୁ ହାୟ, ସେମାନେ ଭାବନ୍ତି ଯେ ଅସାମ୍ୟ ହେଉଛି ସାମ୍ୟ ଲାଭର ଉପାୟ । ସେହି ଅସାମ୍ୟ, ମଣିଷ ସମାଜ ଉପରେ ଗୋଟାଏ ଅଭିଶାପ, ସମସ୍ତ ଦୁଃଖର ମୂଳ । ତା'ହିଁ ହେଲା ସମସ୍ତ ଶାରୀରିକ, ମାନସିକ ଆଧ୍ୟାତ୍ମିକ ବନ୍ଧନର ମୂଳ ହେତୁ ।" (୦)

ଏତଏବ "ଅଜ୍ଞତା, ଅସାମ୍ୟ ଓ କାମନା", ଯାହା ସ୍ୱାମୀଜୀଙ୍କ ମତରେ ଦୁଃଖର ମୂଳକାରଣ, ଆଉ ଯେଉଁ 'ଅସାମ୍ୟ' ସମାଜ ପ୍ରତି ଏକ ଅଭିଶାପ ଏବଂ ସମସ୍ତ ପ୍ରକାର ବନ୍ଧନର ହେତୁ, ଠିକ୍ ତାକୁହିଁ ହିନ୍ଦୁ ସାଂପ୍ରଦାୟିକତା, ସଂଘ ପରିବାର ଆପଣାର ନୀତି, ଲକ୍ଷ୍ୟ ଓ ପଥ ଭାବେ ଗ୍ରହଣକରେ । ଆଉ ଠିକ୍ ତାକୁହିଁ ଅନୁସରଣ କରିବା ଦିଗରେ ତା' ଲୋକଙ୍କୁ ଶିକ୍ଷା ଦିଏ, ତାଙ୍କୁ ଉତ୍ସାହିତ ଓ ପରିଚାଳିତ କରେ । ତେଣୁ ତାହା ଜ୍ଞାନ ପରିବର୍ତ୍ତେ ବିଶ୍ୱାସକୁ ନିଜର ନୀତି କରେ, ସାମ୍ୟ ପରିବର୍ତ୍ତେ ସାମାଜିକ ଓ ଅର୍ଥନୈତିକ ଆଦି ସମସ୍ତ ପ୍ରକାରର ଅସାମ୍ୟକୁ

---

* I am a Socialist not because it is a perfect system, but a half is better than no bread. The other systems have been tried and found wanting.

( VI P-389)

(୦) ······Ignorance, inequality and desire are three causes of human misery and one follows the other in unison. Why should a man think himself above any other man ? But alas ! they think inequality is the way to attain equality—the curse of the mankind, the root of all misery—this inequelity. This is the source of all bondage,—physical, mental anm spiritual.

ନିଜର ଲକ୍ଷ୍ୟ କରେ, ଆଉ ବାସନା କାମନାର ପରିହାର ପରିବର୍ତ୍ତେ ରାଜନୈତିକ କ୍ଷମତା ଦଖଲ କାମନାକୁ ନିଜ ଧର୍ମର ସ୍ୱାଭାବିକ ମାର୍ଗ ଭାବେ ଅନୁସରଣ କରେ । ଯିଏ ଯେତେ ପ୍ରକାର କହିଲେ ବା ପ୍ରତିଶ୍ରୁତି ଦେଲେ ବି ଧର୍ମ ରାଜନୀତିର ମିଶ୍ରଣର ସେହି ଚରିତ୍ର ବଳବତ୍ତର ଥିବା ପର୍ଯ୍ୟନ୍ତ ମଣିଷ ଜୀବନ ଦୁଃଖ ନିର୍ଯ୍ୟାତନାରୁ ମୁକ୍ତ ନୁହେଁ, ତାହା ଓଲଟି ଅଧିକ ତୀବ୍ର ଓ ପ୍ରଖର ହେବାକୁ ବାଧ୍ୟ । ଅତଏବ ଯେଉଁସବୁ ବିଷୟ ବିଶେଷ କରି ନିମ୍ନ ଶ୍ରେଣୀ ଲୋକଙ୍କର ଜାଗରଣ ଆଣେ, ଯାହାକୁ ସ୍ୱାମୀଜୀ ଧର୍ମର କର୍ତ୍ତବ୍ୟ ବୋଲି ଜ୍ଞାନ କରୁଥିଲେ, ଠିକ୍ ସେଇସବୁକୁ ପ୍ରତିହତ କରିବା ହେଲା ହିନ୍ଦୁ ସାଂପ୍ରଦାୟିକତାବାଦର ଧର୍ମ; କିନ୍ତୁ ପୂର୍ବର ମଧ୍ୟଯୁଗୀୟ ରୀତିରେ ସେହି ବ୍ରାହ୍ମଣ୍ୟବାଦର ପ୍ରତିଷ୍ଠା ବର୍ତ୍ତମାନ ସମୟରେ ଅସମ୍ଭବ । ତେଣୁ ତାକୁ କାଏମ କରିବାକୁ ହେଲେ ଆଧୁନିକ ରୀତିରେ ଭୋଟ ମାଧ୍ୟମରେ ଯେ କୌଣସି ପ୍ରକାରେ କ୍ଷମତା ହାସଲ କରିବାକୁ ହେବ । ଆଗେ ସେହି ବ୍ରାହ୍ମଣବାଦ, ରାଜରାଜୁଡ଼ା ଶାସନର ପୋଷିତ ମିତ୍ର ହୋଇଥିଲା, ଆଜି ଠିକ୍ ତାକୁ ହିଁ ଗଣତାନ୍ତ୍ରିକ ଶାସନର ଭିତ୍ତି କରିବା ଲାଗି, ହିନ୍ଦୁ ସାଂପ୍ରଦାୟିକତାବାଦୀଙ୍କର ଏଇ ସଂଗ୍ରାମ—ଯା'ର ରାଜନୈତିକ ରୂପ ହେବ ଏକ ଧର୍ମୀୟ ରାଷ୍ଟ୍ର—ହିନ୍ଦୁରାଷ୍ଟ୍ର ।

*

କାର୍ଯ୍ୟ ସହିତ କାରଣ, ବୃକ୍ଷ ସହିତ ମଞ୍ଜି ଭଳି ପ୍ରତ୍ୟେକଟି ସମସ୍ୟା ସହିତ ତା'ର ସମାଧାନ ଜଡ଼ିତ । ୧୯୨୫ରେ ଜନ୍ମ ନେଇଛି ଆର୍. ଏସ୍. ଏସ୍. ନାଗପୁରରେ ହିନ୍ଦୁମାନଙ୍କୁ ସଂଗଠିତ କରି, 'ହିନ୍ଦୁ ରାଷ୍ଟ୍ର' ଗଠନର ଲକ୍ଷ୍ୟ ନେଇ । ଠିକ୍ ସେତିକିବେଳେ ଲାହୋରରେ ଶହୀଦ ଭଗତ୍ ସିଂହ ଗଢ଼ିଲେ ଭାରତ ନଓ୍ୱଜୱାନ୍ ସଂଘ, ତା'ର ଲକ୍ଷ୍ୟ ଥିଲା ଧର୍ମନିରପେକ୍ଷ, ଶ୍ରେଣୀହୀନ ସମାଜର ପ୍ରତିଷ୍ଠା । ତା'ର ଶପଥ ଥିଲା — ବ୍ୟକ୍ତି, ଗୋଷ୍ଠୀ, ସଂପ୍ରଦାୟ ସବୁ ସ୍ୱାର୍ଥ ଉପରେ ଦେଶର ସ୍ୱାର୍ଥ ହିଁ ସର୍ବୋଚ୍ଚ—ସେଥିଲାଗି ସବୁ ତ୍ୟାଗ କରିବାକୁ ହେବ । ସେଇଦିନୁ ଶହୀଦ ଭଗତ୍ ସିଂହ ରାଜନୀତି ଓ ଧର୍ମକୁ ମିଶ୍ରଣ ବିରୁଦ୍ଧରେ ଜୋର ଦେଇ ଆସିଛନ୍ତି । ସେହି ଆଦର୍ଶ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ସେ ଲେଖିଥିଲେ "୧୯୧୪-୧୫ରେ ଶହୀଦଗଣ ରାଜନୀତିରୁ ଧର୍ମକୁ ପୃଥକ୍ କରିଥିଲେ । ସେମାନଙ୍କର ଦୃଢ଼ ବିଶ୍ୱାସ ଯେ ଧର୍ମ ହେଲା ବ୍ୟକ୍ତି ବିଶେଷରେ ବ୍ୟକ୍ତିଗତ ବ୍ୟାପାର । ତେଣୁ ସେଥିରେ କାହାକୁ ହସ୍ତକ୍ଷେପ କରିବାକୁ ହେବ ନାହିଁ । ସେହିପରି ରାଜନୀତିରେ ଧର୍ମର ପ୍ରବେଶକୁ ନିଷେଧ କରିବାକୁ ହେବ । କାରଣ ତାହା ମିଶିଗଲେ ସେଇ ଏକା କ୍ଷେତ୍ରରେ ସେମାନେ ଏକ ସ୍ୱରରେ କାମ କରି ପାରିବେ ନାହିଁ । ସେଥିଲାଗି ଗଦର ପାର୍ଟି ଭଳି ଏକ ଆନ୍ଦୋଳନ ଅଖଣ୍ଡ ଓ ଐକ୍ୟବଦ୍ଧ ହୋଇ

ରହିଥିଲ । ସେଥିରେ ଶନ୍ଦ ହେବାରେ ସମସ୍ତଙ୍କ ଉପରେ ଶିଖମାନେ ରହିଥିଲେ ବି ହିନ୍ଦୁ ମୁସଲମାନ ମଧ୍ୟ ଖୁବ୍ ପଛରେ ନ ଥିଲେ । ( ସାଂପ୍ରଦାୟିକ ଦଙ୍ଗା ଔର୍ ଉନ୍‌କା ଇଲଜ । କାର୍ତ୍ତି, ଜୁନ ୧୯୬୭) ।

ରାଜନୀତି ଓ ଧର୍ମ, ଏହି ମିଶ୍ରଣର ପରିଣତି କେତେ ଭୟାବହ ସେ ବିଷୟରେ କଂଗ୍ରେସ ଯେ ସଚେତନ ନୁହେଁ, ତା ନୁହେଁ ; କିନ୍ତୁ ତା ଭିତରେ ଏକ ଭୟାନକ ଦୁର୍ବଳତା ରହିଛି । ସଂବିଧାନ ପ୍ରଣୟନ କାଳରେ ଜବାହରଲାଲ ନେହେରୁ କହିଥିଲେ, "ଆମକୁ ଆଉ ସମସ୍ତେ ଦେଶକୁ ଭଲ କରି ମନେ ରଖିବାକୁ ହେବ ଯେ ସାଂପ୍ରଦାୟିକ ଭାବରେ ଧର୍ମ ଓ ରାଜନୀତିରେ ବନ୍ଧୁତ୍ୱ, ସବୁଠୁଁ ବିପଜ୍ଜନକ ବନ୍ଧୁତା, ତା ସବୁଠାରୁ ଗୋଟାଏ ଅଦ୍ଭୁତ ଜାରଜ ଶାବକକୁ ଜନ୍ମ ଦିଏ ।" (ଏପ୍ରିଲ ୩, ୧୯୪୮)*

ଏଥିରୁ ଜଣାଯିବ ଯେ ସାଂପ୍ରଦାୟିକ ଭାବେ ଧର୍ମ ରାଜନୀତିର ବନ୍ଧୁତ୍ୱ ଅତି ବିପଜ୍ଜନକ । ତା ଅର୍ଥ, ଅସାଂପ୍ରଦାୟିକ ଭାବେ ବନ୍ଧୁତ୍ୱ ବିପଜ୍ଜନକ ନୁହେଁ, କିନ୍ତୁ ସାଂପ୍ରଦାୟିକ କି ଅସାଂପ୍ରଦାୟିକ ତା ସ୍ଥିର କରିବ କିଏ, ତା ମାପକାଠି କ'ଣ ? କଂଗ୍ରେସ ଯାହା କହିବ ସେଇଟା କ'ଣ ଅସାଂପ୍ରଦାୟିକ ଓ ସ୍ୱାଗତଯୋଗ୍ୟ ? ତାହାହିଁ ହୋଇଛି କଂଗ୍ରେସର ଦୃଷ୍ଟିକୋଣ । ସିଏ ତାକୁ ବିଶେଷ କରି ନିର୍ବାଚନ ସଂଗ୍ରାମ ଓ ସରକାର ଗଠନ କ୍ଷେତ୍ରରେ ଲଗାଇଛନ୍ତି; ସେହି ବାବ୍ରୀ ମସ୍‌ଜିଦ ଘଟଣା ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ନିଜର ସ୍ୱାର୍ଥ ସାଧନରେ ଧର୍ମର ପ୍ରୟୋଗକୁ ସେମାନେ ସାଂପ୍ରଦାୟିକତା ବୋଲି ମନେ କରନ୍ତି ନାହିଁ । ତାହା ତାଙ୍କୁ ଅନ୍ଧ କରିଦିଏ । ତାଙ୍କର ନିଜର ସେହି ସାଂପ୍ରଦାୟିକ ଭାବ, ନୀତି ଓ କାର୍ଯ୍ୟ ଯେ ଦେଶରେ ଅନ୍ୟାନ୍ୟ ସାଂପ୍ରଦାୟିକତାକୁ ଉତ୍ସାହିତ, ସଂଗଠିତ ଓ ଶକ୍ତିଶାଳୀ କରେ ତାହା ତାଙ୍କ ଆଖିରେ ପଡ଼େ ନାହିଁ । ଫଳରେ ସାଂପ୍ରଦାୟିକତା ଏବେ ନିର୍ବାଚନର ଏକ ଅମୋଘ ଅସ୍ତ୍ର । ଥରେ ଧର୍ମର ପ୍ରୟୋଗକୁ ପ୍ରଶ୍ରୟ ଦେଲେ ତାକୁ ରୋକିବା ଅସମ୍ଭବ । ଅଭିଜ୍ଞତା କହେ, ଆଜି ତାହା ଖୋଦ ସେହି କଂଗ୍ରେସକୁ ଗ୍ରାସ କରିବାକୁ ଉଦ୍ୟତ ଏବଂ ଶେଷରେ ଧର୍ମନିରପେକ୍ଷ ପ୍ରଜାତନ୍ତ୍ରର ହତ୍ୟା ଓ ହିନ୍ଦୁ ରାଷ୍ଟ୍ର ଗଠନ ଦିଗରେ ତାହା ବିପଜ୍ଜନକ ।

---

* We must have it clearly in our mind and in the minds of the country that the alience of religion and politics in the shape of communalism is the most dangerous alience and it yields the most abnormal kind of illegimate brood. (April 3, 1998)

ଅତଏବ ରାଜନୀତି ଓ ଧର୍ମର ମିଳନରୁ ଉଦ୍ଭବ, ସେହି ସାଂପ୍ରଦାୟିକତା'ର ଦାନବର ଗ୍ରାସରୁ ଭାରତର ପ୍ରାଣ, ତା'ର ଜାତୀୟ ଜୀବନକୁ ରକ୍ଷା କରିବାକୁ ହେବ । ଏବେ ରାଜନୀତିରୁ ଧର୍ମକୁ ଅଲଗା କରିବା ବାଟରେ ବାଧା ଆସେ । କିନ୍ତୁ ବିଷୟଟି ମୁଖ୍ୟତଃ ମାନସିକ ବିଷୟ । ବିଚାର ଜ୍ଞାନ ଓ ମତାଦର୍ଶଗତ ଜିନିଷ । ସେହି ସ୍ତରରେ ତା'ର ମୁକାବିଲା କରିବାକୁ ହେବ । ମନର ଧାରଣାକୁ ଆଇନ ଦ୍ୱାରା ହଟାଇ ହେବ ନାହିଁ । ଧର୍ମର ବ୍ୟବହାରକୁ କେବଳ ସମ୍ବିଧାନ ସଂଶୋଧନ ବା ଆଇନବଳରେ ରୋକାଯାଇ ନପାରେ । ଆଜି ଭୋଟ ରାଜନୀତିରେ ଧର୍ମର ବ୍ୟବହାର ଆଇନ ଅଭାବରୁ ଘଟୁନାହିଁ । ତାହା ଘଟୁଛି, ମୁଖ୍ୟତଃ ଇଚ୍ଛାଶକ୍ତିର ଅଭାବରୁ । ବିଗତ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ଲାଗି ରହିଥିବା ବାବରୀ ମସଜିଦ ରାମ ଜନ୍ମଭୂମିର ବିବାଦ ତା'ର ସଦ୍ୟ ପ୍ରମାଣ । ପ୍ରଚଳିତ ଆଇନ ଭିତରେ ଯାହାର ସମାଧାନ ସମ୍ଭବ ତାକୁ ଗଡ଼ାଇ ଗଡ଼ାଇ ଅଣାଯାଇଛି । ଇଚ୍ଛାଶକ୍ତିର ଅଭାବରୁ ତାହା କ୍ରମାଗତ ଜଟିଳ ହୋଇ ଉଠିଛି, ସାଂଘାତିକ ହେବାରେ ଲାଗିଛି । ସେହି ଇଚ୍ଛାଶକ୍ତି ନିର୍ଭର କରେ ବିଷୟବସ୍ତୁର ସଚେତନ ଉପଲବ୍ଧି ଉପରେ । ତାହା ବିନା ଆଇନ ଯେତେ ନ୍ୟାୟସଙ୍ଗତ, ଯଥାର୍ଥ ଓ କଠୋର ହେଲେ ବି ତାହା ନିରର୍ଥକ । ତେଣୁ କେବଳ ଭୋଟରେ ନୁହେଁ, ରାଜନୀତିର ପ୍ରତ୍ୟେକ କ୍ଷେତ୍ରରେ, ସରକାରର ସମସ୍ତ ସ୍ତରରେ ଧର୍ମର ବ୍ୟବହାର ବନ୍ଦ କରିବାକୁ ହେବ । ଥରେ ତାକୁ ପ୍ରଶ୍ରୟ ଦେଲେ, ରାଜନୀତିର ଶରୀରରେ ତା'ର ପ୍ରବେଶ ଓ ପ୍ରସାରକୁ ରୋକିବା ସମ୍ଭବ ନୁହେଁ । ରାଜନୀତିରେ ଧର୍ମର ପ୍ରବେଶ ସାଂପ୍ରଦାୟିକ ରୂପ ଗ୍ରହଣ କରିବାକୁ ବାଧ୍ୟ । ମିଷ୍ଟ, ତିକ୍ତ, କଷାୟର ମିଶ୍ରଣରେ ଜଳ ନିଜର ସ୍ୱଚ୍ଛତା ହରାଇ ଯେପରି ସେମାନଙ୍କର ସ୍ୱାଦ ଓ ଗୁଣକୁ ବହନ କରେ, ମିଠା, ଖଟା, ପିତା ପାଣିରେ ପରିଣତ ହୁଏ, ସେହିପରି ରାଜନୀତିର କଥା । ରାଜନୀତିରେ ଧର୍ମର ମିଶ୍ରଣ ଘଟିଲେ ତା'ର ନିଜର ସ୍ୱଚ୍ଛତା ଲୋପପାଏ । ଧର୍ମ ସଂପ୍ରଦାୟ ଅନୁଯାୟୀ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ଶିଖ ଆଦି ସଂପ୍ରଦାୟର ଭାବ ଓ ବିଚାରଦ୍ୱାରା ତାହା ଆକ୍ରାନ୍ତ ଓ ପରିଚାଳିତ ହୁଏ । ଶେଷରେ ରାଜନୀତି, ସେହି ଧର୍ମ ଅନୁସାରେ ହିନ୍ଦୁ, ମୁସଲମାନ ଓ ଶିଖ ସାଂପ୍ରଦାୟିକ ରାଜନୀତିରୂପେ ପ୍ରକାଶ ପାଏ ।

ତାହା, ଲୋକଙ୍କୁ ବୁଦ୍ଧି ଓ ବିଚାରଜ୍ଞାନ ଦ୍ୱାରା ନଟାଣି ଅନ୍ଧ ବିଶ୍ୱାସ ଦ୍ୱାରା ଟାଣିବାରେ ଲାଗନ୍ତି । ତାହା ନିଜ ସଂପ୍ରଦାୟର ଲୋକଙ୍କ ବୁଦ୍ଧି ଓ ବିଚାରଜ୍ଞାନକୁ ଯେପରି ଦଳିଦିଏ, ଅନ୍ୟ ସଂପ୍ରଦାୟର ମନୀଷୀର ବୁଦ୍ଧି ଓ ବିଚାରଜ୍ଞାନକୁ ସେହିପରି ଉପେକ୍ଷା କରେ । ନିଜ ସଂପ୍ରଦାୟର ବିଶ୍ୱାସର ଜବରଦସ୍ତି ବିସ୍ତାରର ଉଦ୍ୟମ

ଅନ୍ୟ ସଂପ୍ରଦାୟର ବିଶ୍ୱାସର ବିରୋଧୀତାକୁ ଆହ୍ୱାନ କରେ । ଏହାହିଁ ହେଉଛି ଭାରତର ଅଭିଜ୍ଞତା । ତେଣୁ ଆଇନ ଅପେକ୍ଷା ଅଧିକ ଆବଶ୍ୟକ ମାନସିକ, ବୌଦ୍ଧିକ ଓ ସାମାଜିକ ସ୍ତରରେ ସାଂପ୍ରଦାୟିକତା ବିରୁଦ୍ଧରେ, ଆଉ ସଂପୂର୍ଣ୍ଣ ଧର୍ମନିରପେକ୍ଷତା ଦିଗରେ ଅନବରତ ମତାଦର୍ଶଗତ ସଂଗ୍ରାମ ।

*

ରାମ ଜନ୍ମହେତୁ ଅଯୋଧ୍ୟା ଏବେ ଏକ ତୀର୍ଥସ୍ଥାନରେ ଗଣ୍ୟ ; କିନ୍ତୁ ଏହା ଅତି ନିକଟର କଥା । ପ୍ରାଚୀନତା ଦିଗରୁ ଦେଖିଲେ ତା'ହା ପୁରୀର ବହୁପଛରେ । ବାଚସ୍ପତି ମିଶ୍ରଙ୍କ ୧୪୬୦ରେ ରଚିତ 'ତୀର୍ଥ ଚିନ୍ତାମଣି'ରେ ଗୟା, ପ୍ରୟାଗ, କାଶୀ, ପୁରୁଷୋତ୍ତମ ଆଦି ବହୁ ତୀର୍ଥର ନାମ ରହିଛି । ଅଥଚ, ରାମ ଜନ୍ମହେତୁ ଅଯୋଧ୍ୟା ଯେ ଏକ ପୁଣ୍ୟଭୂମି ତାର କୌଣସି ଉଲ୍ଲେଖ ନାହିଁ । ଡକ୍ଟର ଶ୍ରୀବାସ୍ତବଙ୍କ ତୀର୍ଥ ଯାତ୍ରା ସମ୍ବନ୍ଧୀୟ ନିବନ୍ଧରୁ ଜଣାଯାଏ ଯେ କେବଳ ୧୬୦୦ ଶତାବ୍ଦୀରେ ଅଯୋଧ୍ୟା ହିନ୍ଦୁ ତୀର୍ଥଭାବେ ବିକାଶଲାଭ କରେ, ଏପରିକି ଦେବତାଭାବେ ରାମଙ୍କର ସ୍ୱୀକୃତି ୧୩୦୦ ଶତାବ୍ଦୀରୁ ଆରମ୍ଭ ହୋଇଛି । ରାମଙ୍କ ଜନ୍ମସ୍ଥାନ ନେଇ ବହୁ ଲେଖା ରହିଛି, କିନ୍ତୁ ସେହି ଉପଲକ୍ଷେ କୌଣସି ମନ୍ଦିର ନିର୍ମାଣର ସୂଚନା ନାହିଁ । ଆକବରଙ୍କ ଦରବାରରେ ରାଜା ତୋଡରମଲ୍ଲ, କାଶ୍ମୀର ପଣ୍ଡିତଙ୍କୁ ନେଇ ୧୫୮୫ରେ ତୋଦରନନ୍ଦନ ନାମକ ଏକ ଧର୍ମୀୟ ଏନ୍‌ସାଇକ୍ଲୋପେଡ଼ିଆ ଭଳି ଗ୍ରନ୍ଥ ରଚନା କରିଥିଲେ । ସେ ତୁଳସୀ ଦାସଙ୍କୁ ଭେଟିଛନ୍ତି । କାଶୀ ବିଶ୍ୱନାଥ ମନ୍ଦିର ମରାମତି କରିଛନ୍ତି । ଅଥଚ ଅଯୋଧ୍ୟା ମନ୍ଦିର ନେଇ କିଛି କହିନାହାନ୍ତି । ମନ୍ଦିର ଭଙ୍ଗା ହୋଇଥିଲେ ସେ ତା'ର ମରାମତି ନ କରି ଛାଡ଼ି ନ ଥାନ୍ତେ । ଡକ୍ଟର ଆର. ଏସ୍. ଶର୍ମା, ଡି. ଏନ୍. ଝା, ଏମ୍. ଅଥର୍. ଅଲି ଓ ସୁରଜଭାନ ଆଦି ଐତିହାସିକଗଣ ତାଙ୍କର ମିଳିତ ଆଲୋଚନାରେ କହନ୍ତି ଯେ ରାମଙ୍କର ଜନ୍ମହେତୁ ଅଯୋଧ୍ୟାର କୌଣସି ସ୍ଥାନ ଯେ ପବିତ୍ର ସେ ନେଇ ୧୬୦୦ ଶତାବ୍ଦୀ (ବିସ୍ତୃତିକ ୧୮୦୦ ଶତାବ୍ଦୀ) ପୂର୍ବରୁ କୌଣସି ପ୍ରମାଣ ନାହିଁ । ରାମ ଜନ୍ମଭୂମି ସମ୍ପର୍କରେ କିମ୍ବଦନ୍ତୀ ୧୮୦୦ ଶତାବ୍ଦୀ ପର୍ଯ୍ୟନ୍ତ ଉଠିନାହିଁ । ତାହା ୧୮୫୦ ବେଳକୁ ପ୍ରକାଶ ପାଇଛି । ତାହା କିପରି ଆରମ୍ଭ ହୋଇଛି ତା'ର ସୂଚନା ମଧ୍ୟ ସେମାନେ ଦର୍ଶାଇଛନ୍ତି । ତାଙ୍କ ମତରେ ମସଜିଦର ବାହାର କାନ୍ଥରେ ଥିବା କେତେକ ମୂର୍ତ୍ତି ଓ ସ୍ତମ୍ଭକୁ ଯେଉଁ ଭଙ୍ଗା ମନ୍ଦିରର ନିଦର୍ଶନରୂପେ ଦର୍ଶାଯାଏ ସେ ସବୁକୁ ବାହାରୁ ଆଣି ସେଠାରେ ଖଞ୍ଜାଯାଇଛି । ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ଗଣ ତାହାର ପ୍ରମାଣ ଦେଇଥାନ୍ତି ।

ଆଗରୁ ଆମେ ଜାଣିଛେ ଯେ ୧୮୫୭ର ସ୍ୱାଧୀନତା ସଂଗ୍ରାମୀଗଣ ତାଙ୍କ ଧର୍ମ ଅନୁଯାୟୀ ସେଇଠି ମସ୍‌ଜିଦ ଓ ରାମ ଚବୁତରାର ପାଖାପାଖି ଏକାଠି ପ୍ରାର୍ଥନା କରୁଥିଲେ । ୧୮୮୫ରେ ମହନ୍ତ ରଘୁବୀର ଦାସ ସେଇ ଚବୁତରା ଉପରେ ଏକ ମନ୍ଦିର ନିର୍ମାଣଲାଗି ଅନୁମତି ଲୋଡ଼ନ୍ତି, ତାଙ୍କ ଅନୁସାରେ ଚବୁତରା ହେଲା ରାମ ଜନ୍ମସ୍ଥାନ, ବାବରି ମସ୍‌ଜିଦ ନୁହେଁ । ତେଣୁ କସ୍ମିନ୍‌କାଳେ ମସ୍‌ଜିଦ ଭାଙ୍ଗିବାର ପ୍ରଶ୍ନ ଉଠି ନାହିଁ । ଏପରିକି ବିଜେପି ନେତା ବାଜପେୟୀ ମଧ୍ୟ ୧୫, ଫେବୃୟାରୀ ୧୯୮୭ରେ ତାକୁ ପାଖାପାଖି ଗ୍ରହଣ କରିଯାଇଥିଲେ । ସେ ମୁସଲମାନମାନଙ୍କୁ କହନ୍ତି ତାଙ୍କ ମସ୍‌ଜିଦ ହିନ୍ଦୁଙ୍କୁ ଦେଇ ଦିଅନ୍ତୁ, ସେମାନେ ତାକୁ ସୁରକ୍ଷିତ କରି ରଖିବେ ଓ ତା' ପାଖକୁ ଲାଗି ମନ୍ଦିର ନିର୍ମାଣ କରିବେ, ଅର୍ଥାତ୍ ମସ୍‌ଜିଦ ଭାଙ୍ଗିବାର ପ୍ରଶ୍ନ ନାହିଁ; କିନ୍ତୁ ତା'ର ଦୁଇବର୍ଷ ପରେ ଜୁନ ୧୧, ୧୯୮୯ରେ ପାଲନପୁରରେ ବିଜେପି ପ୍ରସ୍ତାବ ନେଇ ରଥଯାତ୍ରା ଆରମ୍ଭ କରେ । ଆଡ଼ଭାନୀ ଘୋଷଣା କରନ୍ତି ଯେ ସେ ରାମ ଜନ୍ମଭୂମିକୁ ଭୋଟରେ ପରିଣତ କରିବେ ।

ରାମଙ୍କ ଜନ୍ମସ୍ଥାନ ପ୍ରକୃତରେ କେଉଁଠି ସେ ବିଷୟରେ କେହି ସ୍ଥିର ନିଶ୍ଚିତ ନୁହନ୍ତି । ଏକ ପୌରାଣିକ ଚରିତ୍ରର ଜନ୍ମ ସ୍ଥାନକୁ ଐତିହାସିକ ବାସ୍ତବତା ଭିତରେ ଖୋଜିବାକୁ ଯିବା, ନଈରେ ହଜାଇ ପୋଖରୀରେ ଖୋଜିଲାଭଳି । ବିଜେପିର ତତ୍କାଳୀନ ସଭାପତି ବାଜପେୟୀ ସେହି ଜନ୍ମସ୍ଥାନ ନେଇ ସନ୍ଦେହ ପ୍ରକାଶ କରନ୍ତି (ମଇ ୧୭ ତାରିଖ ୧୯୮୯) । ଏବର ସଭାପତି ଆଡ଼ଭାନୀ ସେହି ବର୍ଷ ସେପ୍‌ଟେମ୍ବର ୩୦ରେ କହିଥିବା ପ୍ରକାଶ, "କେହି ପ୍ରମାଣ କରିପାରିବେନି ଯେ ତାହା ରାମଙ୍କର ଜନ୍ମସ୍ଥାନ ।" *

ଯାହାର କୌଣସି ପ୍ରମାଣ ନାହିଁ, ଯାହାର ସତ୍ୟତା ସମ୍ବନ୍ଧରେ ସେଇମାନେ ନିଜେ ସନ୍ଦିହାନ, ସେହିମାନେ ହେଲେ ରାମ ଜନ୍ମଭୂମି ଆନ୍ଦୋଳନର

---

* The BJP leaders are not even sure about exact location of the spot where Ram was born. Atal Bihari Bajapaye has admitted that as late as May 17, 1989. More significantly Advani himself was reported to have said in September 30 this year in Bomboy. "No one can prove that it (the Babri Mosque) was the birth place of Sree Ramm but could not wait for the Court verdict as he felt it was a matter of "belief." (Nikhil Chakravarty, Sunday Times of India)

ଅଗ୍ରଣୀ, ବାବରୀ ମସ୍‌ଜିଦ ଭାଙ୍ଗିବାର ସଂଗଠକ, ଯାହା ଫଳରେ ସାରା ଦେଶବ୍ୟାପୀ ଧ୍ୱଂସର ତାଣ୍ଡବଲୀଳା । ଶହଶହ ସଂଖ୍ୟାରେ ଲୋକଙ୍କ ପ୍ରାଣହାନୀ ଏବଂ ହଜାର ହଜାର କୋଟି ଟଙ୍କାର ସମ୍ପତ୍ତି ଭସ୍ମୀଭୂତ ; କିନ୍ତୁ କାହିଁକି ?

ତା'ର ଉତ୍ତର ଦିଏ ୯ । ୧୧ । ୮୯ର ପ୍ରସ୍ତାବ—ଏକ ମଞ୍ଚ ଉପରୁ ଉଠେ ବାବରୀ ମସ୍‌ଜିଦର ଧ୍ୱଂସ ସହ ହିନ୍ଦୁ ରାଷ୍ଟ୍ର ଗଠନର ଆହ୍ୱାନ ।

ରାଷ୍ଟ୍ରର ଉଦ୍ଦେଶ୍ୟ ପ୍ରକାଶପାଏ ତା'ର ସମ୍ବିଧାନରୁ । ଆମର ଏଇ ରାଷ୍ଟ୍ରର ରୂପକୁ ବଦଳାଇବାକୁ ହେଲେ, ତାକୁ ଏକ ହିନ୍ଦୁ ରାଷ୍ଟ୍ରରେ ପରିଣତ କରିବାକୁ ହେଲେ, ତା'ର ସମ୍ବିଧାନକୁ ବଦଳାଇବାକୁ ହେବ । ବର୍ତ୍ତମାନ ସମ୍ବିଧାନ ସ୍ଥାନରେ ଏକ ନୂତନ ସମ୍ବିଧାନ ପ୍ରଣୟନ ଲାଗି ବିଶ୍ୱ ହିନ୍ଦୁ ପରିଷଦ, ସ୍ୱାମୀ ମୁକ୍ତାନନ୍ଦଙ୍କ ନେତୃତ୍ୱରେ ଅକ୍ଟୋବର ୧୪, ୧୯୯୬ରେ ଏକ କମିଟି ଗଠନ କରେ । ହିନ୍ଦୁ ସାଂପ୍ରଦାୟିକତାର ବକ୍ତବ୍ୟ ହେଲା "ଭାରତର ସକଳ ଦୁର୍ଦ୍ଦଶା ଲାଗି, ତାହାର ଏବର ସମ୍ବିଧାନ ଦାୟୀ, ଯେହେତୁ ତାହା ହିନ୍ଦୁ ବିରୋଧୀ । ତାହା ଗଣତନ୍ତ୍ର, ସାମାଜିକ ନ୍ୟାୟ ଓ ଧର୍ମନିରପେକ୍ଷତାକୁ ଭୁଲ ଭାବେ ଲିପିବଦ୍ଧ କରେ । ଭାରତର ଏକତା, ଅଖଣ୍ଡତା ଓ ସାଂପ୍ରଦାୟିକ ସଂହତିକୁ ନଷ୍ଟ ଓ ବିପନ୍ନ କରେ । ତାହା ଦେଶରେ ଦାରିଦ୍ର୍ୟ, ଅନାହାର ଓ ଅଧର୍ମକୁ ବୃଦ୍ଧି କରେ । ତେଣୁ ତାକୁ ଭାଙ୍ଗି ନୂଆକରି ଗଢ଼ିବାକୁ ହେବ ।"

ତାହା ପ୍ରଥମେ ଆକ୍ରମଣ କରେ ଆମର ଜାତୀୟ ପତାକାକୁ, ଯେହେତୁ ଏଥିରେ ଅଶୋକଚକ୍ରର ଚିହ୍ନ ରହିଛି । ତାହା ସାମ୍ରାଜ୍ୟବାଦର ସୂଚନା ଦିଏ । ପ୍ରକୃତ କଥା ହେଉଛି, ତାହା ବୌଦ୍ଧ ଧର୍ମର ମୂଲ୍ୟବୋଧକୁ ପ୍ରକାଶ କରେ । ପ୍ରେମ, ସାମ୍ୟ, ଭ୍ରାତୃତ୍ୱର ସଙ୍କେତ ଦିଏ, ଯାହାକି ହିନ୍ଦୁ ସାଂପ୍ରଦାୟିକତାର ବିରୋଧୀ, ବ୍ରାହ୍ମଣ୍ୟବାଦର ପରିପନ୍ଥୀ । ମୁକ୍ତାନନ୍ଦଙ୍କ ମତରେ "ବର୍ତ୍ତମାନ ସମ୍ବିଧାନ ଲୋକବିରୋଧୀ ।" ତାକୁ ଦଳିତ, ଗରିବ, ଅନୁନ୍ନତ ଜାତି ଓ ନାରୀମାନଙ୍କ ଲାଗି ଗଣତାନ୍ତ୍ରିକ କରିବାକୁ ହେବ । ତେଣୁ ସେମାନଙ୍କ ଲାଗି ଯେଉଁ ସ୍ୱତନ୍ତ୍ର ସଂରକ୍ଷଣ ବ୍ୟବସ୍ଥା ରହିଛି, ତାକୁ ଉଠାଇ ଦେବାକୁ ପଡ଼ିବ । ତାହା ବିଚ୍ଛିନ୍ନତା ଭାବକୁ ଜାଗ୍ରତ କରେ । ତଦ୍ଦ୍ୱାରା ସମସ୍ତେ ସମାନ ହେବେ । ଆଦିବାସୀଙ୍କ ପ୍ରତି ତାଙ୍କର ଦୃଷ୍ଟିକୋଣ ହେଲା ପ୍ରକୃତି ତାଙ୍କୁ ଯେଉଁ ଅଧିକାର ପ୍ରଦାନ କରିଛି ତାକୁ ରକ୍ଷା କରିବାକୁ ପଡ଼ିବ । ଅର୍ଥାତ୍, ସେମାନେ ଯେପରି ସାମାଜିକ ନ୍ୟାୟ ଓ ରାଜନୈତିକ ଅଧିକାର ଶୂନ୍ୟ ହୋଇ ବନ୍ୟପଶୁଙ୍କ ଭଳି ପଡ଼ିଛନ୍ତି ସେହିପରି ପଡ଼ିଥାଆନ୍ତୁ ।

ସମ୍ବିଧାନ ମୁସଲମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦେଉଥିବାରୁ ତାକୁ ଆକ୍ରମଣ କରନ୍ତି । କହନ୍ତି, ମୁସଲମାନଙ୍କ ପର୍ସନାଲ 'ଲ' ଯିବା ଉଚିତ୍, ସିଭିଲ କୋର୍ଡ ସମସ୍ତଙ୍କ ପାଇଁ ସମାନ ହେବା ଦରକାର । ଅଥଚ, ସେମାନେ ଦାବୀ କରନ୍ତି ଯେ "ରାଷ୍ଟ୍ର, ଧର୍ମ ଓ ବ୍ୟକ୍ତିଗତ ବିଷୟ ଉପରେ ହସ୍ତକ୍ଷେପ କରିବା ଉଚିତ ନୁହେଁ ।" ବିବାହ ନେଇ କୌଣସି ଆଇନ ରହିବା ଅନୁଚିତ (ଜାନୁୟାରୀ ୨୧, ୧୯୯୩) ଏହାର ଅର୍ଥ ଅସ୍ପୃଶ୍ୟତା, ବାଲ୍ୟବିବାହ, ସତୀପ୍ରଥା ଆଇନସଙ୍ଗତ ନ ହେବାଟା ଧର୍ମ ଓ ବିବାହ ଉପରେ ହସ୍ତକ୍ଷେପ ।

ବିଜେପିର ଉପସଭାପତି କେ. ଆର. ମାଲକାନି, ମନୁସ୍ମୃତି ସହିତ ପ୍ରାଚୀନ ସମ୍ବନ୍ଧକୁ ନ ଭାଙ୍ଗିବା ଦିଗରେ ଗୋଲୱାଲକରଙ୍କୁ ଦର୍ଶାଇଥାନ୍ତି । (ଦି ଆର୍. ଏସ୍. ଏସ୍. ଷ୍ଟୋରି) । ବିଶ୍ୱହିନ୍ଦୁ ପରିଷଦ ଦ୍ୱାରା ସଂଗଠିତ ହିନ୍ଦୁ ଆଡ଼ଭୋକେଟ୍ ସମ୍ମିଳନୀ ସେହି ମର୍ମରେ ସମ୍ବିଧାନର ପରିବର୍ତ୍ତନ ଦାବୀ କରେ । ତତ୍କାଳୀନ ୟୁ. ପି.ର ବିଜେପି ସରକାରଙ୍କର ଆଡ଼ଭୋକେଟ୍ ଜେନେରାଲଙ୍କର ବକ୍ତବ୍ୟ ହେଲା ମନୁସ୍ମୃତି ସମସ୍ତଙ୍କୁ ନ୍ୟାୟ ଦିଏ । ମନୁ, ଯୁଗଯୁଗ ଧରି ସମସ୍ତ ମାନବଜାତିର ଆବଶ୍ୟକତା ପ୍ରତି ଦୃଷ୍ଟି ଦେଇ ଆସିଛନ୍ତି, ସବୁକାଳର ମାନବଜାତି ଲାଗି ତାହା ଉଦ୍ଦିଷ୍ଟ ।

ମନୁସ୍ମୃତି ଯଦି ଭାରତ ସମ୍ବିଧାନରେ ସ୍ଥାନ ନିଏ, ତେବେ ତା'ର ବ୍ୟାଖ୍ୟା କରିବ କିଏ ? ବିଶ୍ୱହିନ୍ଦୁ ପରିଷଦର ସାଧାରଣ ସମ୍ପାଦକ ଅଶୋକ ସିଂଗଲ କହନ୍ତି, "ଆମର ଧର୍ମାଚାର୍ଯ୍ୟମାନେ ଯାହାକୁ ଧର୍ମ ବୋଲି ଘୋଷଣା କରନ୍ତି, ଆମେ ତାକୁ ନିୟମ ଭାବେ ଗ୍ରହଣ କରିବୁ ।" (୪, ଡିସେମ୍ବର ୧୯୯୨) ସେହିପରି ଜଣେ ଧର୍ମାଚାର୍ଯ୍ୟ ହେଲେ ଆମ ପୁରୀର ଶଙ୍କରାଚାର୍ଯ୍ୟ । ତାଙ୍କ ମତରେ ଜାତିଭେଦ, ଅସ୍ପୃଶ୍ୟତା, ଓ ସତୀପ୍ରଥା ଆଦି ହିନ୍ଦୁ ଧର୍ମର ଅନ୍ତର୍ଭୁକ୍ତ । କାହିର ଧର୍ମାଚାର୍ଯ୍ୟ କହନ୍ତି, "ମନୁସ୍ମୃତି ନିସ୍ୱାର୍ଥପର ଋଷିଙ୍କ କୃତ, ସେଥିରେ ପରିବର୍ତ୍ତନ ଅସମ୍ଭବ ।" ତାଙ୍କ ମତରେ କେବଳ ଉଚ୍ଚଶ୍ରେଣୀ ଲୋକଙ୍କର ଭୋଟ ଅଧିକାର ରହିବ । ଭୋଟରେ ପ୍ରାର୍ଥୀ ହେବାକୁ ହେଲେ, ଘର ଥିବ ଓ ଭୂସମ୍ପତ୍ତି ଦେଉଥିବ । ବୟସ ୩୦ରୁ ୬୦ ହୋଇଥିବ । ଆଉ ଧର୍ମ ଶାସ୍ତ୍ରରେ ପାରଙ୍ଗମ ଥିବ । ପ୍ରଥମ ଦୁଇଟି ସର୍ତ୍ତ ଦ୍ୱାରା କୌଣସି ଗରିବ ଲୋକ ପ୍ରାର୍ଥୀ ହୋଇପାରିବ ନାହିଁ, ଶେଷ ସର୍ତ୍ତ ଦ୍ୱାରା କେବଳ ବ୍ରାହ୍ମଣହିଁ ପ୍ରାର୍ଥୀ ହେବ । ଶାସ୍ତ୍ର ଅନୁଯାୟୀ ସେହିମାନେ କେବଳ ତାହା ଅଧ୍ୟୟନ କରିବାରେ ହକ୍‌ଦାର ।

ଏମାନେ ଗଣତନ୍ତ୍ରର ଘୋର ବିରୋଧୀ । ମୁକ୍ତାନନ୍ଦଙ୍କ ମତରେ ପ୍ରତିନିଧି ମୂଳକ ଶାସନ ବଡ଼ ଖର୍ଚ୍ଚବହୁଳ । ଭାରତ ଭଳି ଦରିଦ୍ର ଦେଶରେ ତାହା

ଗୋଟାଏ ହାଡ଼ଭଙ୍ଗା ବ୍ୟବସ୍ଥା । ତେଣେ ବିଧାନସଭା, ପାର୍ଲିଆମେଣ୍ଟ, ରାଷ୍ଟ୍ରପତି କ୍ଷମତା, ୟୁନିୟନ ବିଶ୍ୱବିଦ୍ୟାଳୟ ଓ ଅଡ଼ିଟର ଜେନେରାଲ ଆଦି ଗଣତନ୍ତ୍ରର ମୌଳିକ ବ୍ୟବସ୍ଥା ସବୁ ଅଧାର୍ମିକ ବିଷୟ । ରାଜା କେବଳ ଧର୍ମକୁ ରକ୍ଷା କରିପାରନ୍ତି । ତାହା ଶାସ୍ତ୍ରାନୁମୋଦିତ । ହିନ୍ଦୁ ସଂପ୍ରଦାୟ ମଧ୍ୟରୁ କେତେକ ନେପାଳ ରାଜାଙ୍କୁ ଆଦର୍ଶ ବୋଲି ବିଚାରନ୍ତି । "ମହାରାଜା ବୀରେନ୍ଦ୍ରଙ୍କୁ ସମସ୍ତ ହିନ୍ଦୁ ଜଗତର ହୃଦୟର ସମ୍ରାଟ" ବୋଲି କୁହାଯାଏ । ତା' କହେ, ଆର୍. ଏସ୍. ଏସ୍ ର ହିନ୍ଦୁ ମୁଖପତ୍ର "ପାଞ୍ଚଜନ୍ୟ" (୭, ଡିସେମ୍ବର ୧୯୯୨) । ଅତଏବ ହିନ୍ଦୁ ରାଷ୍ଟ୍ରର ସୁନିଶ୍ଚିତ ପରିଣତି ହେବ ମନୁସ୍ମୃତିର ଭିତ୍ତିରେ ହିନ୍ଦୁ ଧର୍ମାଚାର୍ଯ୍ୟ ଦ୍ୱାରା ପ୍ରଚାରିତ ମତ ଓ ନୀତି ନିର୍ଦ୍ଦେଶିତ ବ୍ୟବସ୍ଥାର ପ୍ରୟୋଗ ।

ଏହା କରାଯାଏ, ଧର୍ମ ନାମରେ ରାମ ରାଜ୍ୟ ପ୍ରତିଷ୍ଠାର ଡାକଦେଇ । ସେହି ରାମରାଜ୍ୟ କାର୍ଯ୍ୟତଃ ବ୍ରାହ୍ମଣ୍ୟବାଦର ଅଧୀନ । ତାଙ୍କର ସ୍ୱାର୍ଥ ଓ ନୀତିକୁ କାର୍ଯ୍ୟକାରୀ କରେ । ବ୍ରାହ୍ମଣଙ୍କ ନିଷେଧ ଆଜ୍ଞା ଅମାନ୍ୟ କରି ଶୂଦ୍ର ଶମ୍ବୁକ ଶାସ୍ତ୍ର ଅଧ୍ୟୟନ ଓ ତପସ୍ୟା କରିବାରୁ ରାଜା ରାମ ତା' ଶିରଚ୍ଛେଦ କରନ୍ତି । ତେଣୁ ରାମରାଜ୍ୟ ବସ୍ତୁତଃ ବ୍ରାହ୍ମଣ୍ୟବାଦ ଦ୍ୱାରା ଚାଳିତ । ବର୍ତ୍ତମାନ ଲୋକଙ୍କୁ ଆକୃଷ୍ଟ କରିବା ଲାଗି ତାକୁ ପୁଣି ଗାନ୍ଧିଜୀଙ୍କ ନାମରେ ଚଳାଇବାର ଚେଷ୍ଟା ହୁଏ । କିନ୍ତୁ ଗାନ୍ଧିଜୀଙ୍କ ରାମ ରାଜ୍ୟ, ହିନ୍ଦୁ ସାଂପ୍ରଦାୟିକବାଦୀଙ୍କ ରାମରାଜ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ, ତା'ର ପୂରା ବିରୋଧୀ । ଗାନ୍ଧିଜୀଙ୍କ ଭାଷାରେ "ମୋର ରାମରାଜ୍ୟଦ୍ୱାରା ମୁଁ ହିନ୍ଦୁରାଜ ବିଚାର କରେ ନାହିଁ, ମୋର ରାମରାଜ୍ୟ ଅର୍ଥ ପବିତ୍ରରାଜ, ଭଗବାନରାଜ । ମୋ ଲାଗି ରାମ ରହିମ୍ ଏକ ଓ ସମାନ ଦେବତା । (My Ram Raj—I do'nt mean Hindu Raj, I mean by Ram Raj—divine Raj—The kingdon of God. For me Ram and Rahim are one and the same deity.)

ରାଜନୀତିରୁ ଧର୍ମକୁ ଅଲଗା କରିବା କଥା ଉଠିଲାବେଳେ ଗାନ୍ଧୀ ହତ୍ୟାକାରୀ-ମାନେ ଗାନ୍ଧିଜୀଙ୍କ କବରରୁ ଉଠାଇ ଆଣି କହନ୍ତି ଗାନ୍ଧିଜୀ ଧର୍ମହୀନ ରାଜନୀତିରେ ବିଶ୍ୱାସ କରୁ ନଥିଲେ । ତେଣୁ ରାଜନୀତି ସହିତ ଧର୍ମକୁ ଯୋଡ଼ିବାକୁ ହେବ । ତାକୁ ଅଲଗା କରିବା ଅନୁଚିତ । କିନ୍ତୁ ଧର୍ମ କ'ଣ ? ଧର୍ମ କହିଲେ ଗାନ୍ଧିଜୀ କ'ଣ

ବୁଝନ୍ତି ? ଗାନ୍ଧିଜୀଙ୍କ ଭାଷାରେ,"ଧର୍ମ କହିଲେ ମୁଁ କ'ଣ ବୁଝେ ? ବୁଝାଉଛି—ତାହା ହିନ୍ଦୁ ଧର୍ମ ନୁହେଁ—ଅବଶ୍ୟ ଯାହାକୁ କି ମୁଁ ଅନ୍ୟ ଧର୍ମଠାରୁ ମହାର୍ଘ ମନେ କରେ । କିନ୍ତୁ ତାହା ହେଉଛି ସେହି ଧର୍ମ, ଯାହାକି ହିନ୍ଦୁଧର୍ମକୁ ଅତିକ୍ରମ କରିଯାଏ—ଯାହା ମଣିଷର ସେହି ପ୍ରକୃତିକୁ ବଦଳାଇ ଦିଏ, ଯାହା ମଣିଷକୁ ଅନ୍ତର୍ନିହିତ ସତ୍ୟ ସହିତ ଅବିଚ୍ଛେଦ୍ୟ ଭାବେ ବାନ୍ଧିଦିଏ, ଯାହାକି ସଦା ନିର୍ମଳ, ପବିତ୍ର କରୁଥାଏ । ତାହା ମାନବ ପ୍ରକୃତିର ଚିରସ୍ଥାୟୀ ଉପାଦାନ, ଯାହାର ପରିପୂର୍ଣ୍ଣ ପ୍ରକାଶ ହେବାରେ କୌଣସି ମୂଲ୍ୟ ଅତ୍ୟଧିକ ନୁହେଁ । ତାହା ଆପଣାକୁ ନ ପାଇବା, ତା'ର କର୍ତ୍ତାଙ୍କୁ ନ ଜାଣିବା, ସେହି କର୍ତ୍ତାଙ୍କ ସହିତ ନିଜର ପ୍ରକୃତ ମିଳନକୁ ଯଥାର୍ଥ ମୂଲ୍ୟ ନ ଦେବା ପର୍ଯ୍ୟନ୍ତ, ଆତ୍ମାକୁ ସର୍ବଥା ଅସ୍ଥିର କରିବାରେ ଲାଗିଥାଏ ।"* ତାହା ହେଲା ଗାନ୍ଧିଜୀଙ୍କ ଧର୍ମ, ଯାହାକି ହିନ୍ଦୁଧର୍ମର ଅନେକ ଊର୍ଦ୍ଧ୍ୱରେ । ତେବେ ହିନ୍ଦୁ ଧର୍ମ ପ୍ରତି ସେହି ତାଙ୍କ ଦୃଷ୍ଟିକୋଣ ହେଉଛି, "ହିନ୍ଦୁବାଦ ଗୋଟାଏ ଏକଚାଟିଆ ଧର୍ମ ନୁହେଁ । ସେଥିରେ ଦୁନିଆର ସବୁ ମହାପୁରୁଷଙ୍କ ଉପାସନାଲାଗି ସ୍ଥାନରହିଛି···ହିନ୍ଦୁଧର୍ମ କହେ, ପ୍ରତ୍ୟେକ ନିଜର ବିଶ୍ୱାସ ଓ ଧର୍ମ ଅନୁସାରେ ଈଶ୍ୱରଙ୍କୁ ଉପାସନା କରନ୍ତୁ । ତାହାସବୁ ଧର୍ମ ସହିତ ଶାନ୍ତିରେ ବାସ କରେ ।" କାରଣ ଜଣକଠାରୁ ଅନ୍ୟଜଣକୁ ଅଲଗା କରିବାପାଇଁ ଧର୍ମ ହୋଇନାହିଁ । ସବୁ ଧର୍ମର ଉଦ୍ଦେଶ୍ୟ ଲୋକଙ୍କୁ ବାନ୍ଧିବାପାଇଁ··· ମୋ ସ୍ୱପ୍ନର ଭାରତରେ ଗୋଟିଏଧର୍ମ, ପୂରାପୂରି ହିନ୍ଦୁ ବା ପୂରାପୂରି ମୁସଲମାନହେଉ

---

* "Let me Explain what I mean by religion. It is not the Hindu religion, which I certainly prize above all other religions, but religion which transcends Hindusim, which changes one's very nature, which binds one indissolubly to the truth within and which ever purifies. It is the permanent element in human nature which counts no cost too great in order to find full expression and which leaves the soul utterly restless untill it has found itself, known its Maker and appreciated the true correspondence between Maker and itself" (Yound India, May 1[illegible], 1920, Collected Works of Mahatma Gandhi Vol. 17, Publication Division, 1965, P---400)

ଗୋଟିଏ ଧର୍ମ ବିକାଶ ଲାଭକରୁ ମୁଁ ଚାହେଁନାହିଁ । ମୁଁ ପୂରାପୂରି ସହନଶୀଳ ହେବାକୁ ଚାହେଁ । ସେଠି ସବୁଧର୍ମ ପରସ୍ପରର ପାଖାପାଖି ହୋଇ କାର୍ଯ୍ୟ କରିବେ ।"*

*

ଏବେ ସୁଦ୍ଧା ସେହି ରାମ ଜନ୍ମଭୂମି ବାବରୀ ମସଜିଦ୍ କଥା ଅମୀମାଂସିତ ଅବସ୍ଥାରେ ରହିଛି । ଗତ ଅଧଶତ, ସେଥିରେ ମୂର୍ତ୍ତି ରଖି ପରେ ଜୋରପୂର୍ବକ ମସଜିଦ୍ ଭାଙ୍ଗି, ତା' ଉପରେ ଦେଉଳ ପକାଇ ପୂଜା ଆରମ୍ଭ କଲେ ତାହା ମନ୍ଦିର ହୋଇଯାଏ ନାହିଁ । ତାହା କେବଳ ମଣିଷ, ମଣିଷ ମଣିଷରେ ଶତ୍ରୁତା ଓ ଶତ୍ରୁତାକୁ ବୃଦ୍ଧି କରେ । ହିଂସା, ଦ୍ୱେଷ ଓ ପ୍ରତିଶୋଧର ଆକାଂକ୍ଷାକୁ ଜାଗ୍ରତ କରେ । ସେଥିରେ ଧର୍ମର କୌଣସି ପ୍ରଶ୍ନ ନାହିଁ । ଆରମ୍ଭରୁ ତାହା କପଟ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଆସିଛି, ସେହି ଆନ୍ଦୋଳନ ହିଁ ତା'ର ପ୍ରମାଣ । ଗାନ୍ଧୀଜୀଙ୍କ ଭାଷାରେ, 'ମନ୍ଦିର କେବଳ ଇଟା ଓ ମାର୍ବଲରେ ଗଢ଼ା ଏକ ସୌଧ ନୁହେଁ, କି ସେଥିରେ ଦେବମୂର୍ତ୍ତି ସ୍ଥାପନ କରିଦେଲେ ତାହା ମନ୍ଦିର ହୋଇଯାଏ ନାହିଁ । ସେ ମୂର୍ତ୍ତି ଦେହରେ ଜୀବନ୍ୟାସ କରିବାରେ ତାହା ମନ୍ଦିରରେ ପରିଣତ ହୋଇପାରେ । ବ୍ରାହ୍ମଣ, ପୁରୋହିତଙ୍କୁ ଡାକିବା, ମନ୍ଦିରର ଭିତ୍ତିପ୍ରସ୍ତର ଦେବା, ପୂଜା ଅର୍ଚ୍ଚନା କରିବାରେ କପଟତା ଥାଇପାରେ । ସତ୍ୟ ହେଉଛି ଯେଉଁମାନେ ମନ୍ଦିର ନିର୍ମାଣରେ ବଦ୍ଧପରିକର, ସେମାନେ ସେହି ମୁହୂର୍ତ୍ତରୁ ତାଙ୍କର ଜୀବନ କଠୋର ବ୍ରତ ସାଧନରେ କଟାଇବା ଉଚିତ । ତାଙ୍କର ସମସ୍ତ ସୁକର୍ମର ଫଳ ମନ୍ଦିରକୁ ସମର୍ପଣ କରିଦେବା ଦରକାର । ମନ୍ଦିରର ବ୍ରାହ୍ମଣ ପୁରୋହିତ, ପରିଚାଳକଙ୍କୁ ଏକ ବୈରାଗୀର ଜୀବନ ଯାପନ କରିବାକୁ ହେବ । ତାହାହେଲେ ଜଣେ ମନ୍ଦିରରେ ପ୍ରବେଶ କଲା ମାତ୍ରେ ତା'ର ହୃଦୟ ପୁଲକିତ ହୋଇଯିବ । ଯଦି ମନ୍ଦିର ସେହି ପ୍ରକାରର ନ ହୁଏ, ତା ଭିତରେ ପଶିଥିବା ମାତ୍ରେ ମନ ଓ ହୃଦୟର ନିର୍ମଳତା ନ

---

*Hinduism is not an exclusive religion. In it there is room for the worship of all the Prophets of the World... Hinduism tells everyone to worship God, according to his own faith and Dharma. So it lives at peace with all religion. Religions are not for separating man from one another. They are meant to bind them... I do not expect India of my dream to develop one religion i e. to be wholly Hindu or wholly Musalman; But I want to be wholly tolerant with its religions working side by side with one another.

(Message of Mahatma Gandhi, edited by Mohan Rao)

ଥାଏ, ତେବେ ତାହା କେବଳ ଏକ ସୌଧମାତ୍ର । ତାହା ପୃଥିବୀ ଉପରେ ଦଣ୍ଡାଏ ଥାଉ । ତାକୁ ମନ୍ଦିର କୁହାଯାଉ ନାହିଁ, ତାହା ମାତ୍ର ଦଖଲଥିବା ଜମି ସବୁ କେବଳ ନଷ୍ଟ ହେବ, [illegible] ପକ୍ଷରହିବ । ତାହା କୌଣସି ନାମରେ ଲଗିବ ନାହିଁ । ତାହା ଏକ ମାତ୍ର ସ୍ଥାନ ଅନୁଷ୍ଠାନରେ ପରିଣତ ହୋଇପାରେ । ଏପରିକି ତାହା [illegible] ସ୍ଥଳ ହୋଇପାରେ" (Collected works, vol.15, Page 485, 86.) ମସଜିଦର ଧ୍ୱଂସସ୍ତୂପ ଉପରେ ନିର୍ମିତ ବର୍ତ୍ତମାନର ସୌଧ କେତେଦୂର ମନ୍ଦିର ପଦବାଚ୍ୟ, ତାହା ଏଥିରୁ ବୁଝାଯାଏ ।

ନିଜର ବିଶ୍ୱାସ, ଉପାସନା ପଦ୍ଧତି କ୍ଷେତ୍ରରେ ରହିଥିବାଯାଏ ମଣିଷ ଧର୍ମ, ଧର୍ମ ହୋଇଥାଏ । ତାହା ଯେଉଁ ମୁହୂର୍ତ୍ତରେ ଅନ୍ୟର ବିଶ୍ୱାସ ଓ ପଦ୍ଧତି ଉପରେ ହସ୍ତକ୍ଷେପ କରେ ତାହା ସେତେବେଳେ ଅନ୍ୟ ସମ୍ପ୍ରଦାୟକୁ ଆଘାତ କରେ । ତାହା କରିବା ଦ୍ୱାରା ସେ ନିଜେ ସାମ୍ପ୍ରଦାୟିକତାରେ ପରିଣତ ହୁଏ । ଅନ୍ୟ ସମ୍ପ୍ରଦାୟ ବିରୁଦ୍ଧରେ ଘୃଣା ସୃଷ୍ଟି କରିବାରେ ତାହା ରାଜନୈତିକ ରୂପ ଗ୍ରହଣ କରେ । କେଣୁ ସାମ୍ପ୍ରଦାୟିକତା କେବଳ ଏକ ଧର୍ମୀୟ ମତବାଦ ନୁହେଁ । ତାହା ମୂଳତଃ ରାଜନୀତି ଏବଂ [illegible] ଦ୍ୱାରା ବ୍ୟବହୃତ ହୁଏ । ସାମ୍ପ୍ରଦାୟିକତାର ଆବରଣ ତଳେ ଧର୍ମ ମୂଳତଃ ସେହି ରାଜନୈତିକ ଉଦ୍ଦେଶ୍ୟ ପୂରଣ କରେ । ପାକିସ୍ଥାନ ଗଠନ, ଗାନ୍ଧିଜୀଙ୍କ ହତ୍ୟାଠାରୁ ବାବରି ମସଜିଦର ପତନ, ତା'ର ପରବର୍ତ୍ତୀ ଘଟଣାବଳୀ ଓ ବର୍ତ୍ତମାନର ରାଜନୈତିକ ଅବସ୍ଥା ତା'ର ଏକ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ସେହି ରାଜନୀତିକୁ ଯଦି ଅନୁଧ୍ୟାନ କରି ଦେଖାଯାଏ, ଦେଖିବ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ତା ପଛରେ ସବୁଠି ଅର୍ଥନୈତିକ ସ୍ୱାର୍ଥ ଜଡ଼ିତ । ସାମ୍ପ୍ରଦାୟିକତାର ନୈତିକ, ଆର୍ଥିକ ଲକ୍ଷ୍ୟ, କେବଳ ଅନ୍ୟ ସମ୍ପ୍ରଦାୟର ଲୋକଙ୍କୁ ହାଣି, ମାରି, ତଡ଼ି ତାଙ୍କ ବୃତ୍ତି ବ୍ୟବସାୟ ବା ସମ୍ପତ୍ତି ବାଡ଼ି ଆଦି ଦଖଲ କରିବା ନୁହେଁ, ସେଥିସହିତ ନିଜ ସମ୍ପ୍ରଦାୟର ଲୁଣ୍ଠନକାରୀଙ୍କର ନଗ୍ନ ରୂପକୁ ଘୋଡ଼ାଇବା ମଧ୍ୟ ତା'ର ଉଦ୍ଦେଶ୍ୟ, ଯେପରିକି ସେମାନେ ଲୋକଙ୍କର ଲୁଣ୍ଠନକର୍ତ୍ତା ନହୋଇ ତାଙ୍କର ତ୍ରାଣକର୍ତ୍ତା ଭଳି ଦେଖାଯିବେ । ଲୋକେ ତାଙ୍କର ଦୁଃଖ ଦୁର୍ଦ୍ଦଶା ଲାଗି ନିଜର ଲୁଣ୍ଠନ ଓ ଶୋଷଣ କର୍ତ୍ତାଙ୍କୁ ନ ଦେଖି, ନିଜର ନିରୀହ ପଡ଼ୋଶୀଙ୍କୁ ନିନ୍ଦାରେ ହିଁ ଲଗିବେ । କେଣୁ ଦେଖାଯାଏ, ଧର୍ମଠାରୁ ସାମ୍ପ୍ରଦାୟିକତା ନେତା ହେଉଛନ୍ତି ପ୍ରତ୍ୟକ୍ଷ, ପରୋକ୍ଷ ଭାବେ ସେହି ସ୍ୱାର୍ଥଲିପ୍ସୁ ଲୋକେ ।

ସାମ୍ପ୍ରଦାୟିକତାକୁ କେବଳ ଏକ ଧର୍ମୀୟ, ଆଧ୍ୟାତ୍ମିକ [illegible] ହୋଇଗଲେ ସବୁ ସମସ୍ୟାର ସମାଧାନ ହୋଇଯିବ ବୋଲି ଯେଉଁମାନେ ଭାବନ୍ତି, ସେମାନେ ଦେଖନ୍ତୁ ମୁଠା ମୁଠାକୁ ଟାଣି ଆଣନ୍ତୁ । ଧର୍ମ [illegible] ହୁଏ, [illegible] ଧର୍ମ

ଅଛି, ତାହା ସେତେ ଖଣ୍ଡରେ ବିଭକ୍ତ ହେବ । କାରଣ ସେହି ମତ, ପ୍ରତ୍ୟେକ ଧର୍ମକୁ ତା'ର ରାଷ୍ଟ୍ର ଗଠନରେ ଉତ୍ସାହିତ କରିବ, ତାକୁ ନ୍ୟାୟସଙ୍ଗତ ଓ ଯୁକ୍ତିଯୁକ୍ତ କରି ଦେଖାଇବ । ତାହା ହାସଲ କରିବା ପଥରେ ହିଂସା, ଦ୍ୱେଷ, ଦଙ୍ଗା, ସଙ୍ଘର୍ଷର ସ୍ରୋତ ଛୁଟାଇବ । ସେଥିରୁ ଭାରତର କୌଣସି ଅଂଶ, କି କୌଣସି ଜାତି, ଧର୍ମ, ସମ୍ପ୍ରଦାୟର ଲୋକେ ବାଦ ପଡ଼ିବେନି । ସେହି ଜାତିତ୍ୱବାଦ ଶେଷରେ ଗୃହ-ଯୁଦ୍ଧରେ ପରିଣତ ହେବ ପୂର୍ବରୁ ଦୁଇଖଣ୍ଡରେ ବିଭକ୍ତ ଭାରତ, ଏବେ ବହୁଖଣ୍ଡରେ ବିଭକ୍ତ ହେବାରେ ତାହା ନିଜର ଭୌଗୋଳିକ ଅସ୍ତିତ୍ୱ ହରାଇବ । ପଶ୍ଚିମରେ କାଶ୍ମୀର ଓ ପଞ୍ଜାବଠାରୁ ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ପ୍ରତ୍ୟେକଠି ବିଚ୍ଛିନ୍ନତାବାଦର ମଞ୍ଜି ରହିଛି ଓ ସ୍ୱାଧୀନତାବାଦର ଦାବୀ ମଧ୍ୟ ଉଠୁଛି ।

ସାମ୍ପ୍ରଦାୟିକ ଶତ୍ରୁତା ଓ ସଂଘର୍ଷ ଭିତର ଦେଇ ଯେଉଁ ରାଷ୍ଟ୍ର ଜନ୍ମନେବ, ତାହା ନିଜର ଅସ୍ତିତ୍ୱ ରକ୍ଷାଲାଗି ସଦାସର୍ବଦା ସେହି ବିଦ୍ୱେଷ ବା ସଂଘର୍ଷର ପନ୍ଥାକୁହିଁ ଆଶ୍ରା କରିବ । ତା ନହେଲେ ତାଙ୍କ ପକ୍ଷରେ ସ୍ୱତନ୍ତ୍ର ଭାବେ ତିଷ୍ଠି ରହିବାର କୌଣସି ଭିତ୍ତି କି ଆବଶ୍ୟକତା ରହିବ ନାହିଁ । ତାଙ୍କର ମୂଳମତ ଲୋପପାଇବ । କାରଣ ଧର୍ମୀୟ ରାଷ୍ଟ୍ରଙ୍କ ପକ୍ଷରେ ମୈତ୍ରୀ ପ୍ରୀତି ଓ ମିଳନର ପଥ ହେଉଛି—ନିଜର ସ୍ୱାଧୀନ ସ୍ଥିତିର ବିଲୟର ପଥ । ତଦ୍ୱାରା ସାମ୍ପ୍ରଦାୟିକତାବାଦୀମାନେ ତାଙ୍କର ଗୁରୁତ୍ୱ ସହ ଅସ୍ତିତ୍ୱ ମଧ୍ୟ ହରାଇଥାନ୍ତି । ସାମ୍ପ୍ରଦାୟିକ ତିକ୍ତତା, ବିଦ୍ୱେଷ ଓ ଉତ୍ତେଜନାକୁ ବଞ୍ଚାଇରଖିବା ଓ ବୃଦ୍ଧି କରିବାଦ୍ୱାରା କେବଳ ସେହି ଦଳମାନେ ବଞ୍ଚି ରହିପାରନ୍ତି ଓ ବୃଦ୍ଧି ପାଇ ପାରନ୍ତି । ତାହାହିଁ ତାଙ୍କର ଜୀବନର ପ୍ରାଣବାୟୁ । ତାକୁ ରକ୍ଷା କରିବା ଲାଗି ସାମ୍ପ୍ରଦାୟିକ ଶକ୍ତି ଓ ଦଳମାନେ ନିଶ୍ଚୟ ସକଳ ପ୍ରକାର ସଂଘର୍ଷ ଶତ୍ରୁତାର ଉପାୟ ଅବଲମ୍ବନ କରିବେ ।

ଭାରତରେ ବିଭିନ୍ନ ଧର୍ମର ଲୋକେ ଏପରି ଜଡ଼ାଜଡ଼ି ହୋଇ ରହିଛନ୍ତି ଯେ, କୌଣସି ସୀମା ଟାଣିକରି, ତାକୁ ଚିହ୍ନିଦେଲେ ଭାଗ ଭାଗ କରି ନ ପାରେ । ପ୍ରତ୍ୟେକ ଧର୍ମୀୟ ରାଷ୍ଟ୍ର ଭିତରେ ଅନ୍ୟ ଧର୍ମ, ବର୍ଣ୍ଣ, ଜାତି, ଉପଜାତିର ଲୋକେ ନିଶ୍ଚୟ ରହିବେ । ସଂଖ୍ୟାଲଘୁ ସମସ୍ୟା, ଭାଷା ଓ ଜାତି ସମସ୍ୟା, ସବୁ-ବେଳେ ଲାଗି ରହିବ । ପୁଣି ପ୍ରକୃତି ଭାରତକୁ ଏପରି ଗୋଟାଏ କରି ଗଢ଼ିଛି ଯେ, ଯେ ଧର୍ମୀୟ ବିଭାଜନଦ୍ୱାରା ତା'ର ପ୍ରାକୃତିକ ଜୀବନ, ଆର୍ଥିକ ଓ ସାମାଜିକ ଜୀବନ ସବୁ ବିପନ୍ନ ହେବ । ନଦୀଜଳ, ପାହାଡ଼ ଜଙ୍ଗଲଠାରୁ ବନ୍ୟ ପଶୁପକ୍ଷୀ ଆଦିଙ୍କ ସହିତ ତା'ର ପ୍ରାକୃତିକ ସମ୍ପଦ ଭାଗ, ଭାଗ ହେବାରେ ଭାରତର ପ୍ରକୃତ ଅସ୍ତିତ୍ୱ ଲୋପ ପାଇବ । ସେହି ସାମ୍ପ୍ରଦାୟିକତାବାଦୀମାନେ ଭାରତୀୟକରଣ, ଭାରତୀୟ ସଂସ୍କୃତି ନାମରେ ତା'ର ବିଭକ୍ତିକରଣରେ ଯେଉଁ ଚେଷ୍ଟା ଚଳାନ୍ତି, ସେଥିରେ ବଳୀ

ପରେ ସେହି ଭାରତୀୟ ସଂସ୍କୃତି । ତାହା ଭାରତର ଶରୀର ସହିତ ତା'ର ଅନ୍ତରାତ୍ମାକୁ ଏପରି ଖଣ୍ଡିତ, ବିକୃତ ଓ ବିଭକ୍ତ କରିଦେବ ଯେ, ତାହା ଉପରେ ପ୍ରାଦେଶିକ ଭାରତୀୟ ସଂସ୍କୃତିର ରୂପ, ତା'ର ଏକତ୍ୱ ଓ ବୃହତ୍ ବୃତ୍ତିର ଲୋପପାଇ ହିନ୍ଦୁ, ଶିଖ, ବୌଦ୍ଧ, ମୁସଲମାନ, ଖ୍ରୀଷ୍ଟିଆନ ଆଦି ସଂସ୍କୃତିରେ ପରିଣତ ହେବ । ବର୍ତ୍ତମାନକୁ ଘଟଣାବଳୀ ଦେଶମାନଙ୍କୁ ଚାହିଁବାରେ, ଭାରତର ଅଖଣ୍ଡ ସଂସ୍କୃତି ମଧ୍ୟ ସେହିପରି ଆଉ ଯେ ଠାଏ ହୋଇ ରହିବ ନାହିଁ । ତା' ମଧ୍ୟ ସେହିପରି ଖଣ୍ଡଖଣ୍ଡ ହେବ ।

ସଂଘ ପରିବାରର ସେହି ସାଂପ୍ରଦାୟିକ ପ୍ରବୃତ୍ତି ବିଶେଷ କରି ଓଡ଼ିଶା ସଂସ୍କୃତିର ବିରୋଧୀ । ସେମାନେ କେବଳ ଭାରତୀୟ ସଂସ୍କୃତିକୁ ହିନ୍ଦୁ ସଂସ୍କୃତିର ରୂପ ଦେଉନାହାନ୍ତି, ତାକୁ କେବଳ ବ୍ରାହ୍ମଣ୍ୟ ସଂସ୍କୃତି ରୂପେ ଥୁଉନାହାନ୍ତି, ତାକୁ ନିଜର ରାଜନୈତିକ ଅସ୍ତ୍ର ରୂପେ ବ୍ୟବହାର କରନ୍ତି । ତାହା କରିବାକୁ ଯାଇ ସେମାନେ ଓଡ଼ିଶାର ଐତିହ୍ୟ ପରମ୍ପରାକୁ ଆକ୍ରମଣ କରି ତାକୁ ଧ୍ୱଂସ କରିବାକୁ ଚାହାନ୍ତି, ତା'ହା ବିନା ତାଙ୍କର ଅସ୍ତିତ୍ୱ ଅସମ୍ଭବ । କାରଣ ଓଡ଼ିଶାର ସଂସ୍କୃତି ଜଗନ୍ନାଥ ସଂସ୍କୃତି, ଯାହାର ଭିତ୍ତି ଓ ଜୀବନର ଆହ୍ୱାନ ହେଲା ସାମ୍ୟ ମୈତ୍ରୀ ଓ ପ୍ରୀତି —ଯାହାକି ସାଧାରଣରେ ପ୍ରଚଳିତ ଧର୍ମଗତ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ । ତା'ର ମାର୍ଗ ଓ ଲକ୍ଷ୍ୟ ହେଲା, ମଣିଷ, ମଣିଷ ମଧ୍ୟରେ ସକଳ ପ୍ରକାର ଭେଦାଭେଦ, ଅସାମ୍ୟ ଓ ପ୍ରୀତିହୀନତାକୁ ଚିରଦିନ ଲାଗି ଦୂର କରିବା । ତେଣୁ ତାହା ମଣିଷକୁ ଅନ୍ୟ କୌଣସି ସଂକୀର୍ଣ୍ଣ ସ୍ୱାର୍ଥ, ମତ ଓ ଲକ୍ଷ୍ୟର ଆବିଳତାର ଚଷମାରେ ନ ଦେଖି, ଦେଖେ ଏକମାତ୍ର ଅନାବିଳ ମାନବୀୟ ଦୃଷ୍ଟିରେ । ଜଗନ୍ନାଥ ସଂସ୍କୃତି, ମଣିଷକୁ ମଣିଷ ସହିତ ମାନବିକତାର ବନ୍ଧନରେ ବାନ୍ଧିବାକୁ ଚାହିଁଲାବେଳେ ସାଂପ୍ରଦାୟିକତାବାଦୀଙ୍କର ଗତି ଓ ଲକ୍ଷ୍ୟ ହୁଏ, ମଣିଷ ଭିତରେ ସଦା ଭେଦାଭେଦ, ଅସାମ୍ୟ ଓ ହିଂସା ପ୍ରବୃତ୍ତିକୁ ଜାଗ୍ରତ କରିବା । ତାଙ୍କ ଅନ୍ତରରେ ଅମଣିଷତା ଭିତରେ ନିମଗ୍ନ କରି ରଖିବା । ତା'ର ଏକମାତ୍ର ପନ୍ଥା ହେଲା ସେହି ସାମ୍ୟ ମୈତ୍ରୀ, ପ୍ରୀତିର ଭାବକୁ ନିଶ୍ଚିହ୍ନ କରି ତା' ସ୍ଥାନରେ ଦ୍ୱନ୍ଦ୍ୱ କଳହ ଓ ସଂଘର୍ଷର ଭାବକୁ ସଦା ଉଦ୍ରେକ କରିବା ।

ତାହା ଜାଣେ ହିଁ ଏ, ଜଗନ୍ନାଥ ତତ୍ତ୍ୱ ଓ ସଂସ୍କୃତିର ବିଲୋପ ବିନା ସାଂପ୍ରଦାୟିକତାର ବିଜୟ କଦାପି ସମ୍ଭବ ନୁହେଁ । ସେହି ସଂଗ୍ରାମରେ ରାମଙ୍କ ପ୍ରତି ଲୋକଙ୍କର ଭକ୍ତି, ବିଶ୍ୱାସ ମୋହକୁ ସେମାନେ ନିଜର ଅସ୍ତ୍ର ରୂପେ ବ୍ୟବହାର କରନ୍ତି । ଯେହେତୁ ସେହି ସଂଘର୍ଷର ମୂଳଉତ୍ସ ପ୍ରେରଣା ଆଉ କେଉଁଠି ଓଡ଼ିଶାରେ ନାହିଁ, ତାହା ଆସେ ଉତ୍ତରପ୍ରଦେଶରୁ । ସେହି ଜଗନ୍ନାଥଙ୍କ ଓ ସଂସ୍କୃତିକୁ ପ୍ରତିହତ କରିବା ଲାଗି ସୃଷ୍ଟି କରାଯାଏ ରାମ ଧର୍ମର ମୋହକୁ । କାରଣ ମୋହଗ୍ରସ୍ତ ମଣିଷ ନିଜର

ହତାହତର ଖବର ହୁଏନା । ସେଥି ସମାଜପନ୍ଥୀ ଲୋକଙ୍କଦ୍ୱାରା ଯେ ବୌଦ୍ଧ ଧାର୍ମି ଭଳି କଣ୍ଟାଯାଇପାରେ । ତେଣୁ ସେହି ସମ୍ପ୍ରଦାୟ ସରକାରୁ ପରମ୍ପରା ଓ ସଂସ୍କୃତର ଜାଗତ ପ୍ରହରୀ ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କର ସାବଧାନ ବାଣୀ ଶୁଣାଇ ଯାଇଛନ୍ତି—

"ଧର୍ମେର ବେଶେ ମୋହ ଯାରେ ଏସେ ଧରେ,
ଅନ୍ଧ ସେ ଜନ ମାରେ, ଆର ଶୁଧୁ ମରେ ।
ନାସ୍ତିକ ସେଓ, ପାୟ ବିଧାତାର ବର
ଧାର୍ମିକତାର କରେ ନା ଆଡ଼ମ୍ବର ।
ଶ୍ରଦ୍ଧା କରିୟା ଜ୍ୱାଲେ ବୁଦ୍ଧିର ଆଲୋ
ଶାସ୍ତ୍ରେ ମାନେ ନା, ମାନେ ମାନୁଷେର ଭାଲୋ ।"

"ହେ ଧର୍ମରାଜ, ଧର୍ମ ବିକାର ନାଶି
ଧର୍ମମୂଢ଼ଜନେରେ ବାଁଚାଓ ଆସି
ଯେ ପୂଜାର ବେଦୀ ରକ୍ତେ ଗିୟେଛେ ଭେସେ
ଭାଙୋ ଭାଙୋ ଆଜି ଭାଙୋ ତା'ରେ ନିଃଶେଷେ
ଧର୍ମକାରାର ପ୍ରାଚୀରେ ବଜ୍ର ହାନୋ
ଏ ଅଭାଗା ଦେଶେ, ଜ୍ଞାନେର ଆଲୋକ ଆନୋ ।"

( ୩୧ ବୈଶାଖ ୧୩୩୦ )